# ଭର୍ତ୍ତୃହରି ଶତକତ୍ରୟୀ

ଲେଖକ
ରାଜର୍ଷି ଭର୍ତ୍ତୃହରି

ଅନୁସୃଜନ
ଶ୍ରୀ ନରସିଂହ ମିଶ୍ର




ପ୍ରକାଶକ :
ସାରସ୍ୱତ ପ୍ରକାଶନୀ
ଭୁବନେଶ୍ୱର -୧୫

ଭର୍ତ୍ତୃହରି ଶତକତ୍ରୟୀ

# ଶତକତ୍ରୟୀ

ରାଜର୍ଷି ଭର୍ତ୍ତୃହରି


ଅନୁସୃଜନ ଶ୍ରୀ ନରସିଂହ ମିଶ୍ର

ପ୍ରଥମ ପ୍ରକାଶ ୨୦୧୪

ପ୍ରକାଶକ ସାରସ୍ୱତ ପ୍ରକାଶନୀ
ପ୍ଲଟ ନ : ଏନ୍ ୧/୨୬୬
ଭୁବନେଶ୍ୱର - ୧୫





ଡି.ଟି.ପି. ରାକେଶ ଗ୍ରାଫିକ୍ସ
ଭୁବନେଶ୍ୱର - ୧୫
ମୋ : ୯୪୩୭୬୧୨୪୪୪

ମୂଲ୍ୟ ଟ୧୦୦.୦୦

**SATAKA TRAYEE**
BHARTUHARI

Translated by : Shri Narasinha Mishra

First Edition : 2014

Published by : Saraswata Prakashani
Plot No : N1/266
Bhubaneswar - 15

D.T.P. : Rakesh Graphics
Bhubaneswar

Price : Rs 100.00

# ପୃଷ୍ଠଭୂମି

ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ଶେଷାର୍ଦ୍ଧ ।

ସେତେବେଳେ ଉଜ୍ଜୟିନୀର ପ୍ରଖ୍ୟାତ ହିନ୍ଦୁରାଜା ଥିଲେ ଭର୍ତ୍ତୃହରି । ତାଙ୍କ ସାନ ଭାଇ ବିକ୍ରମାଦିତ୍ୟ ।

ତତ୍କାଳୀନ ବିଖ୍ୟାତ ରାଜାମାନଙ୍କ ମଧ୍ୟରେ ଭର୍ତ୍ତୃହରି ଥିଲେ ଅନ୍ୟତମ । ସେ ଥିଲେ ଅତ୍ୟନ୍ତ ପ୍ରଜାବତ୍ସଳ, କ୍ଷମାଶୀଳ ଓ ଦୟାଳୁ ରାଜା । ତାଙ୍କ ରାଜ୍ୟଥିଲା, ଶ୍ରୀ, ସମୃଦ୍ଧି, ଏବଂ ସୁଶାସନର ଏକ ପ୍ରସିଦ୍ଧ ପୀଠ । ପ୍ରଜାଗଣ ପରମ ପରିତୋଷ ମଧ୍ୟରେ ଜୀବନ ଯାପନ କରୁଥିଲେ ।

ରାଜା ଭର୍ତ୍ତୃହରି ଥିଲେ ପ୍ରଚଣ୍ଡ ସାରସ୍ୱତ ପ୍ରତିଭାର ଅଧିକାରୀ । ସେ ଜଣେ ମହାନ୍ ସଂସ୍କୃତ କବି ଏବଂ ବୈୟାକରଣିକ ମଧ୍ୟ । ତାଙ୍କ ବ୍ୟାକରଣ ପୁସ୍ତକର ନାମ "ବାକ୍ୟପଦୀୟ" । ଏହାର ଅନ୍ୟନାମ 'ହରିକାରିକା' । ଏହା ପାଣିନିଙ୍କ ଅଷ୍ଟାଧ୍ୟାୟୀ ଗ୍ରନ୍ଥ ପରି, ଏକ ପ୍ରାମାଣିକ ଗ୍ରନ୍ଥ । କେତେକ କହନ୍ତି, "ସେ ମଧ୍ୟ, ଭଟ୍ଟିକାବ୍ୟର ରଚୟିତା ।

ଭର୍ତ୍ତୃହରିଙ୍କର ତିନିଟି 'ଶତକ' ଅଛି ଯଥା 'ନୀତିଶତକ', 'ଶୃଙ୍ଗାରଶତକ' ଏବଂ 'ବୈରାଗ୍ୟଶତକ' । 'ଭର୍ତ୍ତୃହରି ସୁଭାଷିତ' ନାମରେ ଏହା ପ୍ରକାଶିତ ହୋଇଛି । ତାଙ୍କର ଅନ୍ୟ ଦୁଇଟି କାବ୍ୟ ହେଉଛି "ମହାଭାଷ୍ୟ ଦୀପିକା ଏବଂ ମହାଭାଷ୍ୟ ତ୍ରିପଦୀ ।"

ଭର୍ତ୍ତୃହରିଙ୍କର ନୀତିଶତକ ୧୬୭୦ ଖ୍ରୀଷ୍ଟାବ୍ଦରେ ଫ୍ରେଞ୍ଚ ଭାଷାରେ ଅନୁଦିତ ହୋଇଥିଲା । କିଛି ବର୍ଷପରେ ତିନିଟି ଯାକ ପୁସ୍ତକ ଲାଟିନ୍, ଜର୍ମାନୀ ଏବଂ ଇଂରାଜିରେ ଅନୁବାଦିତ ହେଲା । ତାଙ୍କ ବୈରାଗ୍ୟଶତକ', ନିଜ ବୈରାଗ୍ୟର ଏକ ସ୍ୱାନୁଭୂତ ଝଲକ ।

ପ୍ରଥମେ ତାଙ୍କର ପାରିବାରିକ ଜୀବନ ଥିଲା ଅତ୍ୟନ୍ତ ସୁଖମୟ । ସେ ତାଙ୍କ ପାଟରାଣୀଙ୍କୁ ଏକାନ୍ତଭାବରେ ଭଲ ପାଉଥିଲେ । ପାଟରାଣୀ ମଧ୍ୟ ଥିଲେ ପରମ ପତିବତ୍ସଳା । ଅବଶ୍ୟ ଏହାଥିଲା ତାଙ୍କର ଏକ ନିଖୁଣ କପଟ ଅଭିନୟ । ରାଜସଭାର ଜଣେ ଅମାତ୍ୟଙ୍କ ସହିତ ରାଣୀଙ୍କର ଗୋପନ ସମ୍ପର୍କ ଥିଲା । ରାଜା ପ୍ରଥମେ ଏହା ଜାଣିପାରିନଥିଲେ । ଦୀର୍ଘ ଦିନପରେ ଅନୀତିର ପ୍ରମାଣ ପାଇ, ସେ ଗଭୀର ମର୍ମାହତ ହେଲେ । ପ୍ରୀତି ପ୍ରତ୍ୟୟ ମଧ୍ୟରେ ସେ ରହସ୍ୟମୟ ନାରୀ ଚରିତ୍ରକୁ ଭେଦ କରି ପାରିନଥିଲେ । ଏ ଘଟଣା ପରେ ତାଙ୍କର ଆତ୍ମ-

# ପୃଷ୍ଠଭୂମି

ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ଶେଷାର୍ଦ୍ଧ ।

ସେତେବେଳେ ଉଜ୍ଜୟିନୀର ପ୍ରଖ୍ୟାତ ହିନ୍ଦୁରାଜା ଥିଲେ ଭର୍ତ୍ତୃହରି । ତାଙ୍କ ସାନ ଭାଇ ବିକ୍ରମାଦିତ୍ୟ ।

ତତ୍କାଳୀନ ବିଖ୍ୟାତ ରାଜାମାନଙ୍କ ମଧ୍ୟରେ ଭର୍ତ୍ତୃହରି ଥିଲେ ଅନ୍ୟତମ । ସେ ଥିଲେ ଅତ୍ୟନ୍ତ ପ୍ରଜାବତ୍ସଳ, କ୍ଷମାଶୀଳ ଓ ଦୟାଳୁ ରାଜା । ତାଙ୍କ ରାଜ୍ୟଥିଲା, ଶ୍ରୀ, ସମୃଦ୍ଧି, ଏବଂ ସୁଶାସନର ଏକ ପ୍ରସିଦ୍ଧ ପୀଠ । ପ୍ରଜାଗଣ ପରମ ପରିତୋଷ ମଧ୍ୟରେ ଜୀବନ ଯାପନ କରୁଥିଲେ ।

ରାଜା ଭର୍ତ୍ତୃହରି ଥିଲେ ପ୍ରଚଣ୍ଡ ସାରସ୍ୱତ ପ୍ରତିଭାର ଅଧିକାରୀ । ସେ ଜଣେ ମହାନ୍ ସଂସ୍କୃତ କବି ଏବଂ ବୈୟାକରଣିକ ମଧ୍ୟ । ତାଙ୍କ ବ୍ୟାକରଣ ପୁସ୍ତକର ନାମ "ବାକ୍ୟପଦୀୟ" । ଏହାର ଅନ୍ୟନାମ 'ହରିକାରିକା' । ଏହା ପାଣିନିଙ୍କ ଅଷ୍ଟାଧ୍ୟାୟୀ ଗ୍ରନ୍ଥ ପରି, ଏକ ପ୍ରାମାଣିକ ଗ୍ରନ୍ଥ । କେତେକ କହନ୍ତି, "ସେ ମଧ୍ୟ, ଭଟ୍ଟିକାବ୍ୟର ରଚୟିତା ।

ଭର୍ତ୍ତୃହରିଙ୍କର ତିନିଟି 'ଶତକ' ଅଛି ଯଥା 'ନୀତିଶତକ', 'ଶୃଙ୍ଗାରଶତକ' ଏବଂ 'ବୈରାଗ୍ୟଶତକ' । 'ଭର୍ତ୍ତୃହରି ସୁଭାଷିତ' ନାମରେ ଏହା ପ୍ରକାଶିତ ହେଇଛି । ତାଙ୍କର ଅନ୍ୟ ଦୁଇଟି କାବ୍ୟ ହେଉଛି "ମହାଭାଷ୍ୟ ଦୀପିକା ଏବଂ ମହାଭାଷ୍ୟ ତ୍ରିପଦୀ ।"

ଭର୍ତ୍ତୃହରିଙ୍କର ନୀତିଶତକ ୧୬୭୦ ଖ୍ରୀଷ୍ଟାବ୍ଦରେ ଫ୍ରେଞ୍ଚ ଭାଷାରେ ଅନୁଦିତ ହୋଇଥିଲା । କିଛି ବର୍ଷପରେ ତିନିଟି ଯାକ ପୁସ୍ତକ ଲାଟିନ୍, ଜର୍ମାନୀ ଏବଂ ଇଂରାଜିରେ ଅନୁବାଦିତ ହେଲା । ତାଙ୍କ ବୈରାଗ୍ୟଶତକ', ନିଜ ବୈରାଗ୍ୟର ଏକ ସ୍ୱାନୁଭୂତ ଝଲକ ।

ପ୍ରଥମେ ତାଙ୍କର ପାରିବାରିକ ଜୀବନ ଥିଲା ଅତ୍ୟନ୍ତ ସୁଖମୟ । ସେ ତାଙ୍କ ପାଟରାଣୀଙ୍କୁ ଏକାନ୍ତଭାବରେ ଭଲ ପାଉଥିଲେ । ପାଟରାଣୀ ମଧ୍ୟ ଥିଲେ ପରମ ପତିବତ୍ସଳା । ଅବଶ୍ୟ ଏହାଥିଲା ତାଙ୍କର ଏକ ନିଖୁଣ କପଟ ଅଭିନୟ । ରାଜସଭାର ଜଣେ ଅମାତ୍ୟଙ୍କ ସହିତ ରାଣୀଙ୍କର ଗୋପନ ସମ୍ପର୍କ ଥିଲା । ରାଜା ପ୍ରଥମେ ଏହା ଜାଣିପାରିନଥିଲେ । ଦୀର୍ଘ ଦିନପରେ ଅନୀତିର ପ୍ରମାଣ ପାଇ, ସେ ଗଭୀର ମର୍ମାହତ ହେଲେ । ପ୍ରୀତି ପ୍ରତ୍ୟୟ ମଧ୍ୟରେ ସେ ରହସ୍ୟମୟ ନାରୀ ଚରିତ୍ରକୁ ଭେଦ କରି ପାରିନଥିଲେ । ଏ ଘଟଣା ପରେ ତାଙ୍କର ଆତ୍ମ-

ଭର୍ତ୍ତୃହରି ଶତକତ୍ରୟୀ

ବିଶ୍ୱାସ ତୁଟିଗଲା । ମନ ମଧ୍ୟରେ ସୃଷ୍ଟି ହେଲା ସଂସାର ପ୍ରତି ବୈରାଗ୍ୟ । ବେଦନା ବିକ୍ଷୁବ୍ଧ ରାଜା ଭର୍ତ୍ତୃହରି, ସାନଭାଇ ବିକ୍ରମାଦିତ୍ୟଙ୍କୁ ସିଂହାସନରେ ଅଭିଷିକ୍ତ କରି, ତପସ୍ୟା ପାଇଁ ବନଗମନ କଲେ । ବିଶ୍ୱାସଘାତିନୀ ରାଣୀଙ୍କୁ ରାଜଦଣ୍ଡରେ ଦଣ୍ଡିତ ନକରି, ସେ ନିଜେ ନିର୍ବାସନ ଦଣ୍ଡ ବରଣ କରିନେଲେ ।

ରାଜା ଭର୍ତ୍ତୃହରିଙ୍କ ଶତକତ୍ରୟୀ ପାଠ କରିବା ପରେ, ଭାବବିହ୍ୱଳ ହୋଇ ମୁଁ ତାକୁ ଓଡ଼ିଆ ଭାଷାରେ ଭାବାନୁବାଦ କରିବାକୁ ପ୍ରୟାସ କଲି ଏବଂ ସୃଜନଟିର ଶୀର୍ଷକ ରଖିଲି, 'ଭର୍ତ୍ତୃହରି ଶତକ ତ୍ରୟୀ' । ଏହା ପାଠକମାନେ କିପରି ଭାବରେ ଗ୍ରହଣ କରିବେ, ତାହା ସମୟ କହିବ । ଦୀର୍ଘ ଅତୀତର କବିକୃତ କାବ୍ୟମାନସକୁ ବର୍ତ୍ତମାନର ପୃଷ୍ଠଭୂମିରେ ପ୍ରକାଶ କରିବା, ସହଜସାଧ୍ୟ ନୁହେଁ । ତଥାପି ମୋର ଆବେଗାପ୍ଲୁତ ଏହି ସାରସ୍ୱତ ଅର୍ଘ୍ୟ, ପାଠକମାନଙ୍କୁ ସମ୍ୟକ ଆନନ୍ଦ ଦେଲେ, ଶ୍ରମ ସାର୍ଥକ ହେବ ।

ଭୁବନେଶ୍ୱର
ତା୨୯.୦୬.୨୦୧୪
ଶ୍ରୀଗୁଣ୍ଡିଚା

ବିନୀତ
ନରସିଂହ ମିଶ୍ର

# ନୀତି ଶତକ

ଦିକ୍କାଲାଦ୍ୟନବଛିନ୍ନାନନ୍ତଚିନ୍ମାତ୍ରମୂର୍ତ୍ତୟେ
ସ୍ୱାନୁଭୂତ୍ୟେକସାରାୟ ନମଃ ଶାନ୍ତାୟ ତେଜସେ ।

ବିଘ୍ନ ବିନାଶନେ ବନ୍ଦୁଅଛି ମୁହିଁ
ପରାତ୍ପର ବ୍ରହ୍ମପଦ
ଶାନ୍ତ ତେଜୋମୟ ଦିବ୍ୟ ଜ୍ଞାନମୟ
ନିରାକାର ମୂର୍ତ୍ତିମନ୍ତ ।
ଅନନ୍ତ ଅନାଦି ଦିକ୍‌କାଳ ଭେଦି
ବିଦ୍ୟମାନ ଚରାଚର,
ସର୍ବ ବିଘ୍ନମମ କରନ୍ତୁ ହରଣ
ହେ ପ୍ରଭୁ ପରମେଶ୍ୱର !
ପ୍ରଣମୁଛି ପଦେ ତବ,
ଆହେ ବିଘ୍ନହର ଦେବ !

•

ବୋଦ୍ଧାର ମତ୍ସରଗ୍ରସ୍ତାଃ ପ୍ରଭବଃ ସ୍ମୟଦୂଷିତାଃ
ଅବୋଧୋପହତାଶ୍ଚାନ୍ୟେ ଜୀର୍ଣ୍ଣମଙ୍ଗେ ସୁଭାଷିତଂ ।୨ ।

ବିଜ୍ଞ ଲୋକ ହେଲେ ପରଶ୍ରୀକାତର
ଇତର ହୋଇଲେ ମୂର୍ଖ,
ପ୍ରଭୁପଣ ଲଭି ଗର୍ବିତ ହେଲେ
ପ୍ରକଟିଲେ ନିଜ ଦର୍ପ-
ସଦ୍‌ଗ୍ରନ୍ଥ ପଦାବଳୀ,
କି’ ପ୍ରଭାବ ମନେ ପକାଇବ ତାଙ୍କ
ସୁଭାଷିତ ହେଲା ବୋଲି ।

ଅଜ୍ଞଃ ସୁଖମାରାଧ୍ୟଃ ସୁଖତରମାରାଧ୍ୟତେ ବିଶେଷଜ୍ଞଃ
ଜ୍ଞାନଲବଦୁର୍ବିଦଗ୍ଧଂ ବ୍ରହ୍ମାପିଚ ତଂ ନରଂ ନ ରଞ୍ଜୟତି ।୩ ।

ଅଳ୍ପ ସୁଖେ ଅଜ୍ଞ ମନ ହୋଇଯାଏ ତୋଷ
ଅଳପେ ଲଭଇ ସିଏ ଅଶେଷ ସନ୍ତୋଷ,
ବିପୁଳ ସୁଖ ବିଭବେ ବିଜ୍ଞ ଜନ ମନ
ହୁଅଇ ତୃପତ ମୁଗ୍ଧ ସଦା ଉଲ୍ଲସନ ।
ଅଳପ ବିଦ୍ୟା ଯାହାର ଅତି ଭୟଙ୍କର
ତୃପ୍ତ କରିହେବ ନାହିଁ ତାହାର ଅନ୍ତର ।

ପ୍ରସହ୍ୟ ମଣିମୁଦ୍ଧରେନ୍ମକରବକ୍ତ୍ର ଦଂଷ୍ଟ୍ରାଙ୍କୁରାତ୍
ସମୁଦ୍ରମପିସନ୍ତରେତ୍ ପ୍ରଚଳ ଦୁର୍ମ୍ମିମାଳା କୁଳଂ ।
ଭୁଜଙ୍ଗ ମପି କୋପିତଂ ଶିରସି ପୁଷ୍ପବଦ୍ଧାରୟେ-
ନ୍ନତୁ ପ୍ରତିନିବିଷ୍ଟା ମୂର୍ଖଜନ ଚିତ୍ତମାରାଧୟେତ୍ ।୪ ।

ତୀକ୍ଷ୍ଣଦନ୍ତଯୁକ୍ତ କୁମ୍ଭୀର କବଳୁ
ନିସ୍ତରି ପାରଇ ନର
ଶକ୍ତି ପ୍ରୟୋଗରେ ଗର୍ଭିତ ମଣିକୁ
ପାରେ ସେ କରି ବାହାର ।
ଅତି ଭୟଙ୍କର ଅଶାନ୍ତ ସାଗର
ଉତ୍ତାଳ ତରଙ୍ଗ ମାଳା
ପୋତର ଆଶ୍ରୟେ ଲଘିଂ ପାରେ ନର
ପ୍ରାପ୍ତ ହୁଏ ବାଲିବେଳା ।
ମନ୍ତ୍ରବଶେ ବଶ କୁପିତ ସର୍ପକୁ
କୁସୁମ ମାଳିକା ପ୍ରାୟ
ଗଳେ ଗଳାହାର କରାଯାଇ ପାରେ
ରହେ ନାହିଁ ଲେଶ ଭୟ ।
କିନ୍ତୁ ଅବିବେକୀ ମୂର୍ଖ ଚିତ୍ତ ମନ
ଥାଏ ଯହିଁ ନିମଜ୍ଜିତ,
ଶତ ଚେଷ୍ଟା କରି ଫେରାଇ ଆଣିବା
ଅସମ୍ଭବ ଅଟେ ଏତ ।
ଏ ସତ୍ୟର ଉଲ୍ଲଙ୍ଘନ
କେ କରି ପାରିବ ପୁଣ ।

ଲଭେତ ସିକତାସୁ ତୈଳମପି ଯତ୍ନତଃ ପୀଡୟନ୍
ପିବେଚ୍ଚ ମୃଗତୃଷ୍ଣିକାସୁ ସଲିଳଂ ପିପାସାର୍ଦ୍ଦିତଃ ।
କଦାଚିଦପି ପର୍ଯ୍ୟଟନ୍ ଶଶବିଷାଣ ମାସାଦୟେତ୍
ନତୁ ପ୍ରତିନିବିଷ୍ଟ ମୂର୍ଖଜନ ଚିତ୍ତମାରାଧୟେତ୍ ।୫ ।

ସଯତ୍ନେ ସବିଧି ପେଡ଼ିଲେ ବାଲି
ମିଳିପାରେ, ଅବା ତଇଳ ଖାଲି,
ମୃଗତୃଷ୍ଣା କରେ ଜଳର ଭ୍ରମ
ମିଳିପାରେ କେବେ ଜଳ ସନ୍ଧାନ ।
ଶୃଙ୍ଗହୀନ ଅଟେ ସଦା ଶଶକ
ଉଠିପାରେ ଶୃଙ୍ଗ ମଣ୍ଡି ମସ୍ତକ,
ଅସମ୍ଭବ ଯାହା ଅଟଇ ସଦା
ହୋଇପାରେ ତାହା ସମ୍ଭବ କଦା ।
କିନ୍ତୁ ସୁଧାରିଲେ ମୂରୁଖ ଜନେ,
ସୁଧୁରିବେ ନାହିଁ ସେ କଦାଚନେ ।

ବ୍ୟାଳଂ ବାଳମୃଣାଳତନ୍ତୁଭିରସୌ ରୋଦ୍ଧୁଂ ସମୁଜ୍ଜୃମ୍ଭତେ
ବେତ୍ତୁଂ ବଜ୍ରମଣିଂ ଶିରୀଷକୁସୁମ ପ୍ରାନ୍ତେନ ସନ୍ନହ୍ୟତେ ।
ମାଧୁର୍ଯ୍ୟଂ ମଧୁବିନ୍ଦୁନା ରଚୟିତୁଂ କ୍ଷାରାମ୍ବୁଧେରୀ ହତେ
ନେତୁଂ ବାଞ୍ଛତି ଯଃ ଖଳାନ୍ ପଥିସତାଂ ସୁକ୍ତୈଃ ସୁଧାସ୍ୟନ୍ଦିଭିଃ ।୬ ।

ମୃଣାଳ ସୂତ୍ରେ ଯେ ବାନ୍ଧେ ପ୍ରମତ୍ତ ଗଜକୁ
ଶିରୀଷ କୁସୁମେ ଛେଦେ ବଜ୍ର ହିରକକୁ,
ଲବଣ ସିନ୍ଧୁକୁ କରିବାକୁ ଯେ ମଧୁର
ପକାଏ ତହିଁରେ ନିତି ଆଣି ସେ ଶାକର,
ସୁଧା ସମ ଉପଦେଶ ଢ଼ାଳେ ମୂର୍ଖ କାନେ
ସେ ପ୍ରୟାସ ବ୍ୟର୍ଥ ହୁଏ ସଦା ଅକାରଣେ ।

ସ୍ୱାୟତ୍ତମେକାନ୍ତଗୁଣଂ ବିଧାତ୍ରା
ବିନିର୍ମିତଂ ଛାଦନମଜ୍ଞତାୟାଃ ।
ବିଶେଷତଃ ସର୍ବବିଦାଂ ସମାଜେ
ବିଭୂଷଣଂ ମୌନମପଣ୍ଡିତାନାଂ ।୭ ।

ସ୍ୱଅର୍ଜିତ ଗୁଣେ ବିଧି ରଚିଛନ୍ତି ଜନେ
ତାହା ତାଙ୍କ ପରିଚୟ, ପ୍ରକୃତିର ଗୁଣେ,
ମୌନତା ଅଟଇ ମୂର୍ଖଜନଙ୍କ ଭୂଷଣ
ପଣ୍ଡିତ ସମାଜେ ଗଣ୍ୟ, ହୋଇଥାଏ ମୌନ;
ବିଜ୍ଞ ସମାଜରେ ଥରେ ଖୋଲିଦେଲେ ମୁଖ
ଧରାପଡିଯାଏ ତାଙ୍କ ଅସଲ ସ୍ୱରୂପ ।

ଯଦାକିଞ୍ଚିଦ୍‌ଜ୍ଞୋଽହଂ ଦ୍ୱିପ ଇବ ମଦାନ୍ଧଃ ସମଭବଂ
ତଦା ସର୍ବଜ୍ଞୋଽସ୍ମୀତ୍ୟଭବଦବଲିପ୍ତଂ ମମ ମନଃ ।
ଯଦା କିଞ୍ଚିକିଞ୍ଚିଦ୍ ବୁଧଜନ ସକାଶା ଦବଗତଂ
ତଦା ମୂର୍ଖୋଽସ୍ମୀତି ଜ୍ୱରଇବମଦୋ ମେ ବ୍ୟପଗତଃ ।୮ ।

କରୀ ପରି ଯେବେ ମୁହିଁ
କରୁଥିଲି ଗର୍ବ
ଅଳପ ବିଦ୍ୟାରେ ଭାବେ
ମୁଁ ଜାଣିଛି ସର୍ବ,
ନିଜକୁ ମୁଁ ଭାବଇ ସର୍ବଜ୍ଞ
ପ୍ରକୃତରେ ଥିଲି ମୁହିଁ
କେଡେ ମୂଢ଼ ଅଜ୍ଞ ।
ବିଜ୍ଞ ଜନ ସାନ୍ନିଧରେ
ଭ୍ରମଗଲା ତୁଟି
ଧିକ୍କାର କରିଲି ମନେ, ମୋ ଅଜ୍ଞତା ତ୍ରୁଟି;
ଅନ୍ତର ମୋ ହେଲା ଆଲୋକିତ
ହେଲି ପୁଲକିତ ।

କୃମିକୁଳଚିତଂ ଲାଲାକ୍ଲିନ୍ନଂ ବିଗନ୍ଧିଜୁଗୁପ୍ସିତଂ
ନିରୁପମରସଂ ପ୍ରୀତ୍ୟା ଖାଦନ୍ ଖରାସ୍ଥିନିରାମିଷଂ ।
ସୁରପତିମପି ଶ୍ୱା ପାର୍ଶ୍ୱସ୍ଥଂ ବିଲୋକ୍ୟ ନ ଶଙ୍କତେ
ନହି ଗଣୟତି କ୍ଷୁଦ୍ରୋ ଜନ୍ତୁଃ ପରିଗ୍ରହଫଲ୍ଗୁତାମ୍ । ୯ ।

କୃମିସଙ୍କୁଳ ଦୁର୍ଗନ୍ଧ ଅସ୍ଥି ଖଣ୍ଡେ ପାଇ
ନିମଗ୍ନ ଚିତ୍ତେ ଚୋବାଏ ଶ୍ୱାନ ହୋଇ ବାଇ,
ଅତୀବ ଆନନ୍ଦେ ଥାଏ ଚର୍ବଣେ ମଗନ
ସ୍ୱୟଂ ଇନ୍ଦ୍ର ଛାଡି ତାଙ୍କ ସରଗ ଭୁବନ -
ଆସି, ହେଲେ ଅବା ଉଭା
ଶ୍ୱାନ ଛାଡି ଯାଏ ନାହିଁ, ଖାଦ୍ୟ ମନଲୋଭା ।
ସେହିପରି ମୂର୍ଖଜନ ଆଚରିତ ଧର୍ମ
ଛାଡି ପାରେ ନାହିଁ କେବେ, ତା' କୁତ୍ସିତ କର୍ମ ।
ସେ'ତ, ସ୍ୱଭାବର ଦାସ,
ଗ୍ରହଣ କରେନି କେବେ କା'ର ଉପଦେଶ ।

ଶିରଃ ଶାର୍ବଂ ସ୍ୱର୍ଗାତ୍ ପଶୁପତିଶିରସ୍ତଃ କ୍ଷିତିଧରଂ
ମହୀଧ୍ରାଦୁତ୍ତୁଙ୍ଗାଦବନିମବନେଶ୍ଚାପିଜଲଧିମ୍ ।
ଅଧୋ ଗଙ୍ଗା ସେୟଂ ପଦମୁପଗତାସ୍ତୋକ ମଥବା
ବିବେକଭ୍ରଷ୍ଟାନାଂ ଭବତି ବିନିପାତଃ ଶତମୁଖଃ । ୧୦ ।

ସରଗରୁ ଖସି, ଜାହ୍ନବୀ ଆସି, ଶଙ୍କର ଜଟାଭାରେ
ପ୍ରବେଶ କରିଲେ ଆନନ୍ଦେ ସିଏ, ତହିଁ ରହି ନ ପାରିଲେ-
ଅସ୍ଥିର ଚିତ୍ତ ନେଇ,
ଲମ୍ଫ ଦେଲେ ସେ ହିମାଳୟ ବୁକେ ସେଠାରେ ରହିବା ପାଇଁ ।

ତହିଁ ମଧ୍ୟ ସିଏ ରହି ନପାରିଲେ, ବହୁପଥ ଅତିକ୍ରମି
ଉଚ୍ଚରୁ ଖସି ନୀଚ ମୁହାଁ ହୋଇ ହୋଇଲେ ଭୂତଳଗାମୀ
ନୀଚତାକୁ ନେଲେ ବରି,
ଲବଣ ହ୍ରଦରେ ମିଶିଲେ, ଅମୃତ ଭୁବନକୁ ପରିହରି ।
ଯାହାର ବିବେକ ବୁଦ୍ଧି ହୁଏ ଭ୍ରଷ୍ଟ ଏହି ଗତିଲଭେ ସିଏ
ସ୍ୱର୍ଗ ମନ୍ଦାକିନୀ ଭୂତଳ ଗାମିନୀ ହୋଇବା ଘଟଣା ପ୍ରାୟେ ।

ଶକ୍ୟୋ ବାରୟିତୁଂ ଜଳେନ ହୁତଭୁକ୍ ଛତ୍ରେଣ ସୂର୍ଯ୍ୟାତପଃ
ନାଗେନ୍ଦ୍ରୋ ନିଶିତାଙ୍କୁଶେନ ସମଦୋ ଦଣ୍ଡେନ ଗୌର୍ଗର୍ଦ୍ଦଭଃ,
ବ୍ୟାଧିର୍ଭେଷଜସଂଗ୍ରହୈଶ୍ଚ ବିବିଧୈଂ ର୍ମନ୍ତ୍ରପ୍ରୟୋଗୈର୍ବିଷଂ
ସର୍ବସ୍ୟୌଷଧମସ୍ତି ଶାସ୍ତ୍ରବିହିତଂ ମୂର୍ଖସ୍ୟ ନାସ୍ତ୍ୟୌଷଧଂ ।୧୧ ।

ନିର୍ବାପିତ ହୁଏ ଅଗ୍ନି ବାରି ବରଷଣେ
ସୂର୍ଯ୍ୟ ତାପ ନିବାରିତ, ଛତ୍ର ପ୍ରସାରଣେ,
ଶାଣିତ ଅଙ୍କୁଶେ ମଉହସ୍ତୀ ହୁଏ ବଶ
ହୋଇଯାଏ ସେ ମଣିଷ ମରଜିର ଦାସ ।
ବୃଷଭ, ଗର୍ଦ୍ଦଭ, ସାଧ ପାଞ୍ଚଣ ପ୍ରହାରେ,
ବ୍ୟାଧି ଉପଶମ କରାଯାଏ ଔଷଧିରେ ।
ମନ୍ତ୍ରୌଷଧି ବଳେ ସର୍ପବିଷ ହୁଏ ଦୂର
ହରଣ ପାରଇ କରି ତୀବ୍ର ବିଷ ଜ୍ୱାଳ,
ସବୁଥି ପାଇଁ ରହିଛି ପ୍ରତିକାର ବିଧି
ମୂର୍ଖତାର ଉପଚାରେ ନାହିଁତ ଔଷଧି ।

ମୂର୍ଖ ପଦ୍ଧତି ସମାପ୍ତ

•

# ପଣ୍ଡିତ ପ୍ରକରଣ

ଶାସ୍ତ୍ରୋପସ୍କୃତ ଶବ୍ଦ ସୁନ୍ଦରଗିରଃ ଶିଷ୍ୟପ୍ରଦେୟାଗମାଃ
ବିଖ୍ୟାତାଃ କବୟୋ ବସନ୍ତି ବିଷୟେ ଯସ୍ୟ ପ୍ରଭୋର୍ନିର୍ଦ୍ଧନାଃ
ତଜ୍ଜାଡ୍ୟଂ ବସୁଧାଧିପସ୍ୟ ସୁଧିୟସ୍ତ୍ୱର୍ଥଂ ବିନାପୀଶ୍ୱରାଃ
କୁତ୍ସାଃ ସ୍ୟୁଃ କୁପରୀକ୍ଷକା ହି ମଣୟୋ ଯୈରର୍ଘତଃ ପାତିତାଃ ।୧୨ ।

ଯେ ବିବିଧ ଶାସ୍ତ୍ରଜ୍ଞାନୀ ଆଚାର୍ଯ୍ୟ ନିପୁଣ
ତା' ପାଶେ ଆସନ୍ତି ନିତି ବହୁ ଶିଷ୍ୟଗଣ,
ନାନା ଦେଶୁ, ନାନାଧାମୁ ବିଦ୍ୟା ଲାଭ ପାଇଁ
ଲଭନ୍ତି ସେ ଯଶ ଖ୍ୟାତି ଜ୍ଞାନ ଦାନ ଦେଇ ।

ଯେ ଦେଶର କବି ଗୁରୁ ଅପୂଜ୍ୟ ନିର୍ଦ୍ଧନ
ସେ ଦେଶର ରାଜା ଅଟେ ମୂଢ଼ ଅକିଞ୍ଚନ,
ଜ୍ଞାନୀ, ଗୁଣୀ ବିଜ୍ଞ ବ୍ୟକ୍ତି ସମସ୍ତଙ୍କ ପ୍ରିୟ
ନିଖିଳ ହୃଦୟ ସିଏ କରିଥାନ୍ତି ଜୟ ।

ବଣିକ ହୋଇବି ଯଦି ନ ଚିହ୍ନେ ରତନ
ଚିହ୍ନରା ଭାବରେ ସିଏ ନ ଅଟଇ ଗଣ୍ୟ,
ଗୁଣ ଚିହ୍ନେ ଗୁଣୀ,
ଏତ ଶାସ୍ତ୍ର ବାଣୀ ।

ହର୍ତ୍ତୁର୍ଯାତି ନ ଗୋଚରଂ କିମପି ଶଂପୁଷ୍ଣାତି ଯତ୍ ସର୍ବଦା
ହ୍ୟର୍ଥିଭ୍ୟଃ ପ୍ରତିପାଦ୍ୟମାନମନିଶଂ ପ୍ରାପ୍ନୋତି ବୃଦ୍ଧିଂ ପରାଂ ।
କଳ୍ପାନ୍ତେଷ୍ୱପି ନ ପ୍ରୟାତି ନିଧନଂ ବିଦ୍ୟାଖ୍ୟମନ୍ତର୍ଧନଂ
ଯେଷାଂ ତାନ୍ ପ୍ରତିମାନମୁଜ୍ଝିତ ନୃପାଃ କସ୍ତୈଃ ସହ ସ୍ପର୍ଦ୍ଧତେ । ୧୩ ।

ଜୀବନେ ଅଟଇ ବିଦ୍ୟା ମହାଧନ
ନହୁଏ ତାହାର କ୍ଷୟ,
ଯେତେ ଦାନ କଲେ ସେତେ ବୃଦ୍ଧି ହୁଏ
ତା' ଶକ୍ତି ଅକଳ୍ପନୀୟ ।

କଳ୍ପ କଳ୍ପାନ୍ତରେ ନହୁଏ ତା' ଶେଷ
ଅଶେଷ ଜୀବନ ଧନ,
ଯାହାଠାରେ ଅଛି ବିଦ୍ୟାର ଭଣ୍ଡାର
ଭାଗ୍ୟବାନ ସେହି ଜନ ।

ସିଏ ସର୍ବପ୍ରିୟ ସର୍ବ ହୃଦ ଜୟ
କରିଥାନ୍ତି ବିଦ୍ୟାବଳେ
ତାଙ୍କ ସମକକ୍ଷ କେ ନୁହନ୍ତି ନୃପ
ଏ' ମରତ ମହୀତଳେ ।

ବିଦ୍ୟା ଅଟେ ମହାଶକ୍ତି
ସଦା ଏ' ଜୀବନ ଗତି ।

**ଅଧିଗତପରମାର୍ଥାନ୍ ପଣ୍ଡିତାନ୍ ମାବମଂସ୍ଥା**
**ସ୍ତୃଣମିବ ଲଘୁ ଲକ୍ଷ୍ମୀ ର୍ନୈବ ତାନ୍ ସଂରଣଦ୍ଧି ।**
**ଅଭିନବ ମଦଲେଖା ଶ୍ୟାମଗଣ୍ଡସ୍ଥଳାନାଂ**
**ନ ଭବତି ବିସତନ୍ତୁର୍ବାରଣଂ ବାରଣାନାଂ ।୧୪ ।**

ଯେ' ଅଟେ ବିଭବବନ୍ତ ପରମାର୍ଥ ଧନେ
ଅନ୍ୟଧନ ଲାଭ ଆଶା ନଥାଏ ତା' ମନେ,
ତୃଣସମ ତୁଚ୍ଛ ଅଟେ ତାହା,
ସେ ତାକୁ କିଞ୍ଚିତ ମଣେ ଯେତେ ଦେଲେ ଯାହା ।
ଶ୍ୟାମଳ ଗଣ୍ଡସ୍ଥଳରୁ ଝରେ ଯା'ର ମଦ
ସେ ଗଜରାଜ ଅଟଇ ଅତ୍ୟନ୍ତ ଦୁର୍ମଦ,
ବାରଣକି ସମ୍ଭବ ବାରଣେ !
କୋମଳ ମୃଣାଳ ସୂତ୍ରେ ନିବିଡ ବନ୍ଧନେ !

ଅମ୍ଭୋଜିନୀ ବନବିହାର ବିଳାସମେବ
ହଂସସ୍ୟ ହନ୍ତି ନିତରାଂ କୁପିତୋ ବିଧାତା,
ନତସ୍ୱ ଦୁଗ୍‌ଧଜଳ ଭେଦ ବିଧୌ ପ୍ରସିଦ୍ଧାଂ
ବୈଦଗ୍ଧ୍ୟ କୀର୍ତ୍ତି ମପହର୍ତ୍ତୁ ମସୌ ସମର୍ଥଃ ।୧୫ ।

ପଦ୍ମବନରେ ବିହାର ବିନୋଦ ବିଳାସ
ମରାଳ ପାରେକି କରି ଦୂର ସେ ଅଭ୍ୟାସ –
ରୁଷ୍ଟ ହେଲେ ବି ବିଧାତା,
ପଦ୍ମବନେ ନ ରଚେ କି ସିଏ ଶୋଭା ଯାତ୍ରା ।

କ୍ଷୀର ନୀର ଭେଦବୁଦ୍ଧି ସ୍ୱଭାବ ତାହାର
କାହାରି ପ୍ରଭାବେ, କେବେ ନହୁଏ ତା' ଦୂର,
ଏ'ତ ବିଧିର ବିଧାନ,
କାହାର ଅଛଇ ଶକ୍ତି କେ କରିବ ଆନ ! ।

କେୟୂରାଣି ନ ଭୂଷୟନ୍ତି ପୁରୁଷଂ ହାରା ନ ଚନ୍ଦ୍ରୋଜ୍ଜ୍ୱଳା
ନ ସ୍ନାନଂନ ବିଲେପନଂ ନ କୁସୁମଂ ନାଲଙ୍କୃତା ମୂର୍ଦ୍ଧଜାଃ,
ବାଣ୍ୟେକା ସମଲଂ କରୋତି ପୁରୁଷଂ ଯା ସଂସ୍କୃତା ଧାର୍ଯ୍ୟତେ
କ୍ଷୀଅନ୍ତେ ଖଳୁ ଭୂଷଣାନି ସତତଂ ବାଗ୍‌ଭୂଷଣଂ ଭୂଷଣଂ ।୧୬ ।

ଶୋଭା ବିମଣ୍ଡିତ ହୁଏ ନାହିଁ ବ୍ୟକ୍ତି
ପିନ୍ଧି ଶୁଭ୍ର ମୁକ୍ତାମାଳ,
ବାହୁରେ କେୟୂର, କର୍ଣ୍ଣରେ କୁଣ୍ଡଳ
କଣ୍ଠେ ଶୋଭି ଚନ୍ଦ୍ରହାର ।

ସ୍ନାନ ବିଲେପନ, ଚର୍ଚ୍ଚିତ ଚନ୍ଦନ
କୁସୁମ ଭୂଷଣ କେବେ,
ବ୍ୟକ୍ତିର ସୌନ୍ଦର୍ଯ୍ୟ ପ୍ରକଟ ନକରେ
ମିଷ୍ଟଭାଷୀ ନୁହେଁ ଯେବେ ।
ସବୁ ଯାଏ ହଜି, ସୁଭାଷ ସୁବାସ
ବହିଚାଲେ ଚିରକାଳ,
ଏ ବିଶ୍ୱ ସୁନ୍ଦର ଏ ମର୍ତ୍ତ୍ୟ ମଧୁର
ବଚନ ଅମୃତ ଯା'ର ।

**ବିଦ୍ୟା ନାମ ନରସ୍ୟ ରୂପମଧିକଂ ପ୍ରଚ୍ଛନ୍ନ ଗୁପ୍ତଂ ଧନଂ**
**ବିଦ୍ୟା ଭୋଗକରୀ ଯଶଃ ସୁଖକରୀ ବିଦ୍ୟା ଗୁରୁଣାଂ ଗୁରୁଃ ।**
**ବିଦ୍ୟା ବନ୍ଧୁଜନୋ ବିଦେଶ ଗମନେ ବିଦ୍ୟା ପରଂ ଦୈବତଂ**
**ବିଦ୍ୟା ରାଜସୁପୂଜିତା ନହି ଧନଂ ବିଦ୍ୟାବିହୀନଃ ପଶୁଃ ।୧୭ ।**

ଉତ୍କୃଷ୍ଟତର ବିଦ୍ୟା ନାମ ସ୍ୱରୂପ
ବ୍ୟକ୍ତିର ରୂପଠାରୁ ତା' ସମଧିକ,
ପ୍ରଚ୍ଛନ୍ନ ଧନ ବିଦ୍ୟା ଗୁପତ ତାହା
ମଣିଷ ପାଇଁ ଯାହା ଭରସା ସାହା ।

ବିଦ୍ୱାନ ପାଇଁ ମୁକ୍ତ ସଂଭୋଗ ଥାଳ
ଅମାପ ଯଶ କୀର୍ତ୍ତି ମିଳେ ସକଳ,
ଗୁରୁଙ୍କ ଠାରୁ ଗୁରୁ ବିଦ୍ୟାର ମୂଲ୍ୟ
ବିଦେଶେ ବିଦ୍ୟା ବନ୍ଧୁ ଦେବତା ତୁଲ୍ୟ ।

ରାଜସଭା ମଣ୍ଡିତ, କରେନି, ଧନ
ରାଜ ପୂଜିତ ସଦା ପଣ୍ଡିତ ଜନ,
ବିଦ୍ୟାହୀନ ମନୁଷ୍ୟ ପଶୁରେ ଗଣା
ବିଦ୍ୟା ବିହୁନେ ହୁଏ ସେ ପଥ ବଣା ।
ତେଣୁ ବିଦ୍ୟାହିଁ ସାର,
ବିଦ୍ୟା ବଳରେ ଚଳେ ଏହି ସଂସାର ।

କ୍ଷାନ୍ତିଶ୍ଚେଦ୍ କବଚେନ କିଂ କିମରଭିଃ କ୍ରୋଧୋଽସ୍ତିଚେଦ୍ଦେହିନାଂ
ଜ୍ଞାତିଶ୍ଚେଦନଳେନ କିଂ ଯଦି ସୁହୃଦ୍ଦି ବ୍ୟୌଷଧୈଃ କି ଫଳଂ
କିଂ ସର୍ପୈର୍ଯଦି ଦୁର୍ଜନାଃ କିମୁ ଧନୈର୍ବିଦ୍ୟା ନବଦ୍ୟା ଯଦି
କ୍ରୀଡ଼ା ଚେତ୍ କିମୁ ଭୂଷଣୈଃ ସୁକବିତା ଯଦ୍ୟସ୍ତି ରାଜ୍ୟେନ କିଂ ।୧୮ ।

କି'କରି ପାରିବ କ୍ରୋଧ
କ୍ଷମା ଯା'ର ଅଟଇ ଜୀବନ
କି' କରି ପାରିବେ ଶତ୍ରୁ
ପାଶେ ଥିଲେ ଜ୍ଞାତି ପରିଜନ ।

ଯା' ପାଶେ ଅଛନ୍ତି ମିତ୍ର,
ମହୌଷଧି ପ୍ରୟୋଜନ କିବା
ଖଳସାଥେ ବାସ କଲେ
ସର୍ପ ସାଥେବାସ ସମ ଅବା ।

ବିଦ୍ୟା ଧନେ ଧନୀ ଯିଏ
ଅନ୍ୟ ଧନେ କିବା ପ୍ରୟୋଜନ !
ଅନ୍ୟ ଭୂଷଣ କି ଲୋଡ଼ା
ଯେ ପିନ୍ଧିଛି ଲଜ୍ଜାର ଭୂଷଣ ।

କଣ୍ଠୁ ଯା'ର ଝରେ ନିତି
ପ୍ରାଣମୟ ସଙ୍ଗୀତ ଝଙ୍କାର,
ତା' ପାଇଁ ଅଟଇ ତୁଚ୍ଛ
ଏ' ଭୋଗଭୂ ଅଳୀକ ସଂସାର ।
ତାକୁ, କରେ ବିମୋହିତ
ମଧୁମୟ ଜୀବନ ସଙ୍ଗୀତ ।

ଦାକ୍ଷିଣ୍ୟଂ ସ୍ୱଜନେ ଦୟା ପରିଜନେ ଶାଠ୍ୟଂସଦା ଦୁର୍ଜ୍ଜନେ
ପ୍ରୀତିଃ ସାଧୁଜନେ ନୟୋନୃପଜନେ ବିଦ୍ୱଜ୍ଜନେ ଚାର୍ଜ୍ଜବଂ ।
ଶୌର୍ଯ୍ୟଂ ଶତ୍ରୁଜନେ କ୍ଷମା ଗୁରୁଜନେ ନାରୀଜନେ ଧୂର୍ତ୍ତତା
ଯେ ଚୈବଂ ପୁରୁଷାଃ କଳାସୁ କୁଶଳାସ୍ତେଷ୍ୱେତ ଲୋକସ୍ଥିତି ।୧୯ ।

ସ୍ୱଜନେ ସୌଜନ୍ୟ, ପର ଜନେ ଦୟା,
ଦୁର୍ଜ୍ଜନେ ଶଠତା ଶ୍ରେୟ,
ସାଧୁଜନେ ପ୍ରୀତି, ବିନୟେ ନୃପତି-
ମନକୁ, କରିବ ଜୟ ।
ପଣ୍ଡିତ ଜନ ମନକୁ ତୋଷିବ
ସରଳତା ପଣ ନେଇ,
ଶତ୍ରୁ ଜନ ପାଶେ ଶୌର୍ଯ୍ୟ ପ୍ରକାଶିବ
ଗୁରୁଜନେ କ୍ଷମା ବହି ।
ସଦାନାରୀ ଜନ ମନ,
ଛଳରେ ତୋଷିବ, ଛଳରେ ରସିବ
ସୁପୁରୁଷେ ହେବ ଗଣ୍ୟ ।

ଜାଡ୍ୟଂଧିୟୋ ହରତି ସଞ୍ଚତି ବାଚି ସତ୍ୟଂ
ମାନୋନ୍ନତିଂ ଦିଶତି ପାପମପାକରୋତି ।
ଚେତଃ ପ୍ରସାଦୟତି ଦିକ୍ଷୁ ତନୋତି କୀର୍ତ୍ତିଂ
ସତ୍‌ସଙ୍ଗତିଃ କଥୟ କିଂ ନ କରୋତି ପୁଂ ସାଂ ।୨୦ ।

ସତ୍‌ସଙ୍ଗ କରଇ ଦୂର ମନର ମ୍ଳାନିମା
ପ୍ରକାଶ କରଇ ସଦା ସତ୍ୟର ମହିମା,
ପ୍ରସାରିତ କରେ ମନ ବିପୁଳ ବଳୟେ
ମନକୁ ରଖଇ ସ୍ୱଚ୍ଛ ପାପର ବିଲୟେ ।
ଉଲ୍ଲାସ ଭରଇ ମନେ, ପ୍ରଶାନ୍ତ ଉଦାର,
ଯଶଃ କୀର୍ତ୍ତି କରେ ଦାନ ଶ୍ରଦ୍ଧାର ସମ୍ଭାର ।
କି ନ କରେ ସତ୍‌ସଙ୍ଗ ଜୀବନେ !
ଜୀବନକୁ ଧନ୍ୟକରେ ତାହା ପୁଣ୍ୟଦାନେ ।

ଜୟନ୍ତି ତେ ସୁକୃତିନୋ ରସସିଦ୍ଧାଃ କବୀଶ୍ୱରାଃ
ନାସ୍ତିଯେଷାଂ ଯଶକାୟେ ଜରାମରଣଜଂ ଭୟଂ ।୨୧ ।

ଅଛନ୍ତି ଏ' ସଂସାରେ ଅନେକ କବି
ପ୍ରଚଣ୍ଡ ପ୍ରତିଭାର ସତେବା' ରବି ।
ତାଙ୍କର କଳାକୃତି ରସ ଚର୍ଚ୍ଚିତ
ଅଟଇ ତାହା ନିତ୍ୟ ମଧୁ ମୂର୍ଚ୍ଛିତ ।

ସଦା ସଜୀବ ତାଙ୍କ ଯଶ ଶରୀର
ଜରା ମରଣ ଭୟ ନଥାଏ ତା'ର ।
କାଳଜୟୀ ଅଟଇ ସର୍ଜନା ତାଙ୍କ,
ଅଟନ୍ତି ସୃଷ୍ଟିଶୀଳ ଯଶ ପ୍ରତୀକ ।
ସେ ମହା କବି,
ମହି ମଣ୍ଡଳେ ଖ୍ୟାତ ସେ ଜ୍ଞାନରବି ।

•

# ଶୌର୍ଯ୍ୟ ପ୍ରକରଣ

କ୍ଷୁତ୍‌କ୍ଷାମୋଽପି ଜରାକୃଶୋଽପି ଶିଥିଳପ୍ରାୟୋଽପି କଷ୍ଟାଂ ଦଶା-
ମାପନ୍ନୋଽପି ବିପନ୍ନଦୀଧିତିରପି ପ୍ରାଣେଷୁ ନଶ୍ୟତ୍‌ସ୍ୱପି ।
ମତ୍ତେଭେନ୍ଦ୍ର ବିଭିନ୍ନ କୁମ୍ଭପିଶିତ ଗ୍ରାସୈକବଦ୍ଧ ସ୍ପୃହଃ
କାଂଜୀର୍ଣ୍ଣଂ ତୃଣମତ୍ତ ମାନମହତାମଗ୍ରେସରଃ କେଶରୀ ।୨୨ ।

କ୍ଷୁଧାରେ ପୀଡ଼ିତ ଜରା ଜର୍ଜ୍ଜରିତ
ହେଲେବି ଦୁର୍ବଳ କେଶରୀ
ମତ୍ତଗଜ କୁମ୍ଭସ୍ଥଳ ବିଦାରଣେ
ତା' ମନ ଉଠଇ ଉଛୁଳି ।
ମାଂସାହାର ପାଇଁ ଆକୁଳ,
ନ ପାଇଲା ଯଦି କେବେ ଭକ୍ଷିବକି
ଶୁଷ୍କ ତୃଣ, ହୋଇ ବିକଳ !

ସ୍ୱଳ୍ପଂ ସ୍ନାୟୁବସାବଶେଷ ମଳିନଃ ନିର୍ମାଂସମପ୍ୟସ୍ଥିଗୋଃ
ଶ୍ୱାଲବ୍‌ଧ୍ୱା ପରିତୋଷମେତି ନ ଚ ତତ୍ତସ୍ୟ କ୍ଷୁଧାଶାନ୍ତୟେ ।
ସିଂହୋ ଜମ୍ବୁକମଙ୍କ ମାଗତମପି ତ୍ୟକ୍ତ୍ୱା ନିହନ୍ତି ଦ୍ୱିପଂ
ସର୍ବଃକୃଚ୍ଛ୍ର ଗତୋଽପି ବାଞ୍ଛତି ଜନଃ ସତ୍ତ୍ୱାନୁରୂପଂ ଫଳଂ ।୨୩ ।

ଶ୍ୱାନର ଆସକ୍ତି ଅସ୍ଥିହାଡ଼ ପ୍ରତି
ନଥାଉ ବା ତହିଁ ମାଂସ
ଚୋବାଇବାରେ ସେ ମଜ୍ଜି ରହିଥାଏ
ନ ଲିଭୁ ବା କ୍ଷୁଧା ଲେଶ ।
ସିଂହକିନ୍ତୁ ପାଇ କବଳେ ତାହାର
ଶୃଗାଳକୁ ମାରେ ନାହିଁ,

ଚାହିଁ ରହିଥାଏ, ସୁଯୋଗ ପାଇଲେ
ହାତୀକୁ ମାରିବା ପାଇଁ ।
ଶକ୍ତି ଅନୁରୂପ ଫଳ,
ସଚବେ ଚାହାନ୍ତି ଏ ମହି ମଣ୍ଡଳେ
ପ୍ରକାଶିବେ ନିଜବଳ ।

ଲାଙ୍ଗୁଳ ଚାଳନ ମଧଷ୍ଚରଣା ବପାତଂ
ଭୂମୌ ନିପତ୍ୟ ବଦନୋଦର ଦର୍ଶନଞ୍ଚ ।
ଶ୍ୱା ପିଣ୍ଡଦସ୍ୟ କୁରୁତେ ଗଜପୁଙ୍ଗବସ୍ତୁ
ଧୀରଂ ବିଲୋକୟତି ଚାଟୁଶତୈଷ୍ଚ ଭୁଙ୍କେ ।୨୪ ।

ଭୂମିପରେ ପଡ଼ି ପେଟକୁ ଦେଖାଇ
ଆହାର ମାଗଇ ଶ୍ୱାନ,
ଲାଙ୍ଗୁଳ ହଲାଇ ବିକଳରେ ଚାହେଁ
ଖାଦ୍ୟଦାତା ମୁଖେ ପୁଣ ।
ବିକଳ ଚାହାଣି ତୋଳି
ମନ କିଣିନିଏ ଖାଦ୍ୟ ପାଇଯାଏ
ବାହୁଡ଼େ ଲାଙ୍ଗୁଳ ଚାଳି ।

ହାତୀ ମାଗେନାହିଁ ମାହୁନ୍ତକୁ ଖାଦ୍ୟ
ମଧୁର ଚାହାଣି ତୋଳେ
ମାହୁନ୍ତ ଖୁଆଏ ହାତୀକୁ ତାହାର
ମିଠା ମିଠା କଥା ଛଳେ,
ଆନନ୍ଦରେ ଖାଏ ହାତୀ,
ନଥାଏ ତା'ର କାକୁତି ।

ପରିବର୍ତ୍ତିନ ସଂସାରେ ମୃତଃ କୋ ବା ନ ଜାୟତେ
ସଜାତୋ ଯେନ ଜାତେନ ଯାତି ବଂଶଃ ସମୁନ୍ନତିଂ ।୨୫ ।

ଦୁନିଆ ଅଟେ ପରିବର୍ତ୍ତନଶୀଳ
ଲାଗିଛି ସଦା ଜନ୍ମ ମରଣ ଖେଳ ।
ପରମ୍ପରା କ୍ରମେ କେ, ନ ହୁଏ ଜାତ
ଜନମି କରେ କୁଳ କେ ସମୁନ୍ନତ ।
କ୍ରମରେ ହୁଏ ବ୍ୟତିକ୍ରମ ସର୍ବଦା
ପରିବର୍ତ୍ତନେ ଘଟେ ଆକସ୍ମିକତା ।

କୁସୁମସ୍ତବକସ୍ୟେବ ଦ୍ୱୟୀ ବୃତ୍ତିର୍ମନସ୍ୱିନଃ
ମୂର୍ଦ୍ଧ୍ନିବା ସର୍ବଲୋକସ୍ୟ ଶୀର୍ଯ୍ୟତେ ବନ ଏବ ବା ।୨୬ ।

ସୁଖଦୁଃଖ, ଭଲମନ୍ଦ, ଅବା ପାପ ପୁଣ୍ୟ,
ବେନି ବୃତ୍ତି କରିଥାନ୍ତି ମନରେ ଧାରଣ ।
ମନସ୍ୱୀ ସକଳ,
ନତୁବା ମଉଳି ଯାନ୍ତା ପୁଷ୍ପ ଗୁଚ୍ଛ ତୁଲ ।
ଏଥିପାଇଁ ଅମଳିନ ରହିଅଛି ଏହା
ଅମୃତ ଅଟଇନିତ୍ୟ ସତ୍ୟ ଅଟେ ଯାହା ।

ସନ୍ତ୍ୟନ୍ୟେଽପି ବୃହସ୍ପତିପ୍ରଭୃତୟଃ ସମ୍ଭାବିତାଃ ପଞ୍ଚଷା-
ସ୍ତାନ୍ ପ୍ରତ୍ୟେଷି ବିଶେଷିବିକ୍ରମରୁଚୀ ରାହୁର୍ନ ବୈରାୟତେ ।
ଦ୍ୱାବେବ ଗ୍ରସତେ ଦିନେଶ୍ୱରନିଶା ପ୍ରାଣେଶ୍ୱରୌ ଭାସୁରୌ
ଭ୍ରାତଃ ପର୍ବଣି ପଶ୍ୟ ଦାନବ ପତିଃ ଶୀର୍ଷାବଶେଷାକୃତିଃ ।୨୭ ।

ବୃହସ୍ପତି ଆଦିଛନ୍ତି ପଞ୍ଚଗ୍ରହ
ତାଙ୍କ ସାଥେ ରାହୁ ନକରେ ବିଗ୍ରହ,
ଦିବାକର, ନିଶାକର ତା' ବଇରି
ଚାହେଁ ଏ ଦୁହିଁଙ୍କୁ ସେ ଗ୍ରାସିବ ବୋଲି ।

ନିର୍ଦ୍ଦିଷ୍ଟ ତିଥିରେ ହୁଏ ତା'ର ଭେଟ
ତାଙ୍କୁ, ଶକ୍ତିବଳେ କରେ କବଳିତ,
ତେଜସ୍କର ତେଜ ହୋଇଯାଏ ମ୍ଳାନ
ଜ୍ୟୋସ୍ନାମୟୀ ଚନ୍ଦ୍ର ହୁଅନ୍ତି ମଳିନ ।

ବହତି ଭୁବନଶ୍ରେଣୀଂ ଶେଷଃ ଫଣାଫଳକସ୍ଥିତାଂ
କମଠ ପତିନା ମଧ୍ୟେପୃଷ୍ଠଂ ସଦା ସ ଚ ଧାର୍ଯ୍ୟତେ ।
ତମପି କୁରୁତେ କ୍ରୋଡ଼ାଧୀନଂ ପୟୋଧିରନାଦରା-
ଦହହ ମହତାଂ ନିଃସୀମାନ ଶ୍ଚରିତ୍ର ବିଭୂତୟଃ ।୨୮ ।

ଫଣିରାଜ ଶେଷ ନାଗ ନିଜ ଫଣାପରେ
ଉର୍ଦ୍ଧ୍ୱେ ଟେକି ଧରିଥିଲେ ଏ ମହିମଣ୍ଡଳେ,
କୂର୍ମ ପୃଷ୍ଠେ ଧରିଥିଲେ ବିଷ୍ଣୁ ଏ' ମହୀକୁ
ପ୍ରଳୟେ ବରାହଦନ୍ତେ ଟେକିଲେ ତାହାକୁ ।
ଅଟେ ଏହା ପ୍ରଭୁଙ୍କର ଉଦାର ବେଭାର
ମହନୀୟଙ୍କ ମହତ୍ତ୍ୱ ଅନନ୍ତ ଅପାର ।
ମହତ ଜନର ତଥା ଭାବ ଉଦାରତା
କେ କଳି ପାରିବ କହ ତାଙ୍କ ବିଶାଳତା ।

ସିଂହ ଶିଶୁରପି ନିପତତି ମଦମଳିନ କପୋଳଭିତ୍ତିଷୁ ଗଜେଷୁ
ପ୍ରକୃତିରିୟଃ ସତ୍ୱବତାଂ ନ ଖଳୁ ବୟସ୍ତେଜସାଂ ହେତୁଃ ।୨୯ ।

ଯାହାର ସ୍ୱଭାବ ଯାହା
କେ କରିବ ଆନ
ଶକ୍ତି, ସାମର୍ଥ୍ୟ ବୟସ
ନ ରହଇ ଜ୍ଞାନ ।
ପ୍ରକୃତି ବଶେ ସେ ଚଳେ
ନ ଥାଏ ବିଚାର
ଯଥା ସିଂହ ଶିଶୁ ଝୁଣେ
ମତ୍ତ ଗଜ ଶିର ।
କୁମ୍ଭ ତା'ର କରେ ବିଦାରଣ
ଶିଶୁ ହେଲେ ମଧ୍ୟ ଦୃଢ଼ ଅଟେ ତା'ର ମନ ।

ବରଂ ପ୍ରାଣୋଚ୍ଛେଦଃ ସମଦମଘବନ୍ମୁକ୍ତକୁଳିଶ-
ପ୍ରହାରେ ରୁଦ୍ଗଚ୍ଛଦ୍ ବହୁଳ ଦହନୋଦ୍ଗାର ଗୁରଭି ।
ତୁଷାରାଦ୍ରେଃ ସୂନୋରହହ ପିତରି କ୍ଲେଶବିବଶେ
ନ ଚାସୌ ସମ୍ପାତଃ ପୟସି ପୟସାଂ ପତ୍ୟୁରୁଚିତଃ ।୩୦ ।

ରୋଷ ଜର୍ଜରିତ ଇନ୍ଦ୍ର ବଜ୍ରଧରି ହାତେ
ବାହାରିଲେ ପକ୍ଷଚ୍ଛେଦ କରିବେ ପର୍ବତେ,
ସ୍ୱେଚ୍ଛାଚାରୀ ପକ୍ଷଧାରୀ ପର୍ବତ ସକଳ
କରୁଛନ୍ତି ଏ ବିଶ୍ୱରେ ଭୟର ସଂଚାର ।

ଗିରିରାଜ ହିମାଳୟ ଦେଖି ଏହି ଦୃଶ୍ୟ
କିପରି କରିବେ ଦୃପ୍ତ ଦେବରାଜେ ତୋଷ !
ବିମର୍ଷ ପୁତ୍ର ମୈନାକେ କି ଦେବେ ସାନ୍ତ୍ୱନା
ଲୁଚିଲା ସାଗର ଗର୍ଭେ ହୋଇ ଭୀତମନା ।
ଏକି କେବେ ଯୋଗ୍ୟ ଆଚରଣ
ଶୂରତାର ଶୌର୍ଯ୍ୟ ପ୍ରକରଣ ? ?

ଯଦଚେତନୋଽପି ପାଦୈଃ ସ୍ପୃଷ୍ଟଃ ପ୍ରଜ୍ୱଳତି ସବିତୁରିନକାନ୍ତଃ
ତତ୍ତେଜସ୍ୱୀ ପୁରୁଷଃ ପରକୃତନିକୃତିଂ କଥଂ ସହତେ ।୩୧ ।

ଜଡ଼ପଦାର୍ଥ ହେଲେବି ସୂର୍ଯ୍ୟକାନ୍ତମଣି
ସୂର୍ଯ୍ୟ ଦେବ କର ସ୍ପର୍ଶେ ପ୍ରଜ୍ୱଳିତ ପୁଣି-
ସତେ ଅବା ସେ ଚେତନଶୀଳ,
ତେଜସ୍ୱୀ ପୁରୁଷ କେବେ ସହିବକି
ଦୁର୍ବଚନ କା'ର !
କରିବ ସେ ତା'ର ମାନ ରକ୍ଷା
ଏହା ଅଟେ ଶୂରତାର ଦୀକ୍ଷା ।

•

# ଅର୍ଥପ୍ରକରଣ

ଜାତିର୍ଯାତୁ ରସାତଳଂ ଗୁଣଗଣ ସ୍ତତ୍ରାପ୍ୟଧୋଗଚ୍ଛତାଂ
ଶୀଲଂ ଶୈଳତଟାତ୍‌ପତତ୍ୱଭିଜନଃ ସନ୍ଦହ୍ୟତାଂ ବହ୍ନିନା ।
ଶୌର୍ଯ୍ୟେ ବୈରିଣି ବଜ୍ରମାଶୁ ନିପତତ୍ୱର୍ଥୋଽସ୍ତୁନଃ କେବଳଂ
ଯେନୈକେନ ବିନା ଗୁଣାସ୍ତୁଣଲବପ୍ରାୟାଃ ସମସ୍ତା ଇମେ ।୩୨ ।

ଜାତି ହେଉ ପଛେ ରସାତଳଗାମୀ
ସଦ୍‌ଗୁଣ ଯାଉ ଅତଳେ,
ଶୀଳ ସମ୍ମାନ ଶିଖରରୁ ଖସି
ଚୂର୍ଣ୍ଣ ହେଉ ବା ଭୂତଳେ-
ଆତ୍ମୀୟ ସ୍ୱଜନ ଜ୍ଞାତି ପରିଜନ
ଶୁରତା ବୀରତା ସକଳ
ଅଶନୀ ପ୍ରହାରେ ହେଉ ଅବା ଭସ୍ମ
ହେବ ନାହିଁ ମନ ବିକଳ,
ଏ ସମସ୍ତ ଥାଇ କି ଲାଭ !
ଧନୋନ୍ନତି ଯଦି ହୋଇ ନ ପାରିଲା
ଅସାର ଏ' ସବୁ ବିଭବ ।

ଯସ୍ୟାସ୍ତି ବିତ୍ତଂ ସ ନରଃ କୁଳୀନଃ
ସ ପଣ୍ଡିତଃ ସଃଶ୍ରୁତବାନ୍ ଗୁଣଜ୍ଞଃ ।
ସ ଏବ ବକ୍ତା ସ ଚ ଦର୍ଶନୀୟ
ସର୍ବେ ଗୁଣାଃକାଞ୍ଚନମାଶ୍ରୟନ୍ତି ।୩୩ ।

ବିତ୍ତଶାଳୀ ଯିଏ ଜଗତେ
ତାକୁ କୁଳୀନ ବୋଲି,
ମାନିଥାନ୍ତି ଲୋକେ ତାହାର
ଦୋଷ ତ୍ରୁଟିକୁ ଭୁଲି ।

ଭାବନ୍ତି ସେ ଅଟେ ପଣ୍ଡିତ
ଟା'ର କଥା ସରବେ,
ମାନନ୍ତି ଆନନ୍ଦ ମନରେ
ଭାବି ଗୁଣଜ୍ଞ ଭବେ ।

'ବକ୍ତା' ବୋଲି ଭାବି ଟା' କଥା
ସର୍ବେ ଶୁଣନ୍ତି ଆସି,
ଦର୍ଶନୀୟ ବ୍ୟକ୍ତି ଭାବିଣ
ଦେଖି ହୁଅନ୍ତି ଖୁସୀ ।

ଦୌର୍ମନ୍ତ୍ର୍ୟା ନୃପତି ର୍ବିନଶ୍ୟତି ଯତିଃ ସଙ୍ଗାସ୍ତୁତୋ ଲାଳନାତ୍
ବିପ୍ରୋଽନଧ୍ୟୟନାକ୍କୁଳଂ କୁତନୟାଚ୍ଛୀଳଂ ଖଳୋପାସନାତ୍,
ହ୍ରୀର୍ମଦ୍ୟା ଦନବେକ୍ଷଣା ଦପି କୃଷିଃ ସ୍ନେହ ପ୍ରବାସା ଶ୍ରୟାତ୍
ମୈତ୍ରୀ ଚା ପ୍ରଣୟାତ୍ସମୃଦ୍ଧି ରନୟାଦ୍ତ୍ୟାଗାତ୍ ପ୍ରମାଦାଦ୍ଧନଂ ।୩୪ ।

ଅବିବେକୀ ମନ୍ତ୍ରୀ ଠାରୁ ପାଇ କୁମନ୍ତ୍ରଣା
କର୍ତ୍ତବ୍ୟେ ହୁଅନ୍ତି ରାଜା ସଦା ବାଟବଣା,
କୁସଙ୍ଗ ଦୋଷ ପ୍ରଭାବେ ଟଳେ ଯତିମନ
ଲାଳନ ଦୋଷୁ ବିପଥଗାମୀ ଯେ ସନ୍ତାନ ।
ଅପୂଜ୍ୟ ହୁଅନ୍ତି ବିପ୍ର ମୂର୍ଖଦୋଷ ପାଇଁ
କୁପୁତ୍ର ପ୍ରଭାବେ ନିଶ୍ଚେ କୁଳ ଧ୍ୱଂସ ହୋଇ ।

ମିତ୍ରତା ହୁଅଇ ନଷ୍ଟ ବନ୍ଧୁ ପ୍ରୀତି ବିନା
ଖଳ ଭାବ କରିଥାଏ ଶୁଭବୁଦ୍ଧି ଊଣା ।
ମଦ୍ୟପାନ କଲେ ବ୍ୟକ୍ତି ହରାଏ ସମ୍ମାନ
ଅବହେଳା କଲେ କୃଷି ନ ଉପୁଜେ ପୁଣ ।
ସ୍ନେହ ବନ୍ଧନ ହରାଏ, ଯେ ଚିର ପ୍ରବାସୀ
ଧନହୀନ ହୁଏ ବ୍ୟକ୍ତି ଅପବ୍ୟୟେ ପଶି ।

**ଦାନଂ ଭୋଗୋନାର୍ଶସ୍ତିସ୍ରୋ ଗତୟୋ ଭବନ୍ତି ବିତ୍ତସ୍ୟ**
**ଯୋ ନ ଦଦାତି ନ ଭୁଂକ୍ତେ ତସ୍ୟ ତୃତୀୟା ଗତିର୍ଭବତି ।୩୫ ।**

ଧନ ପାଇଁ ଏ' ବିଶ୍ୱ ପାଗଳ
ସତେଅବା ଜୀବନର
ସ୍ନିଗ୍ଧ ସୁଧା ଧାର ।
ଦାନ, ଭୋଗ, ନାଶ, ଅଟେ ସମ୍ପତ୍ତିର ଗତି
ଧନଦାନ ଅବା ଭୋଗ ନ କରେ ଯେ ନିତି,
ତୃତୀୟ ଗତି ଲଭଇ ନିଶ୍ଚେ ତା'ର ଧନ
ନାଶ ହୁଏ ଅବିଳମ୍ବେ ହୁଏ ଅକାରଣ ।
ଧନର ଏ' ଗତି
ନାହିଁ ଅନ୍ୟ ନୀତି ।

**ମଣିଶାଣୋଲ୍ଲୀଢ଼ଃ ସମର ବିଜୟୀ ହେତିଦଳିତୋ**
**ମଦକ୍ଷୀଣୋ ନାଗଃ ଶରଦି ସରିଦାସ୍ୟା ନ ପୁଳିନା ।**
**କଳା ଶେଷଶ୍ଚନ୍ଦ୍ରଃ ସୁରତମ୍ମୁଦିତା ବାଳବନିତା**
**ତନିମ୍ନା ଶୋଭନ୍ତେ ଗଳିତ ବିଭବାଶ୍ଚାର୍ଥିଷୁ ନୃପାଃ ।୩୬ ।**

ଶାଣଦିଆ ମଣି, ଶସ୍ତ୍ର କ୍ଷତ ଘେନି-
ସମର ବିଜୟୀ ବୀର,
କ୍ଷୀଣ ମଦ କରୀ, ଶରତ ସୁନ୍ଦରୀ
ତଡ଼ାଗ, ନଦୀର ତୀର ।
ଦିଶନ୍ତି କି ମନୋରମ
ଅନୁପମ, ଅନୁପମ ।

ଶୃଙ୍ଗାର ଚର୍ଚ୍ଚିତା ନବନୀତା ବାଳା
ଅଟଇ ସୌନ୍ଦର୍ଯ୍ୟମୟୀ
ଷୋଳ କଳା ଶେଷ ପୂର୍ଣ୍ଣଚନ୍ଦ୍ରହସ
ଶୋଭାମୟୀ..ଶୋଭାମୟୀ ।
ସତ୍‌ପାତ୍ରେ ଯେ କରେ ଦାନ
କି ମହାନ୍ ...କି ମହାନ୍ ।।

**ପରୀକ୍ଷୀଣଃ କଶ୍ଚିତ୍‌ସ୍ପୃହୟତି ଯବାନାଂ ପ୍ରସୃତୟେ**
**ସ ପଶ୍ଚାତ୍ ସମ୍ପୂର୍ଣ୍ଣଃ କଳୟତି ଧରିତ୍ରୀଂ ତୃଣସମାଂ**
**ଅତଶ୍ଚାନେକାନ୍ତା ଗୁରୁଲଘୁ ତୟାର୍ଥେଷୁ ଧନିନା-**
**ମବସ୍ଥା ବସ୍ତୂନି ପ୍ରଥୟତି ଚ ସଙ୍କୋଚୟତି ଚ । ୩୭ ।**

ଧନ ହୀନତା ଅବା ଅଧିକ ଧନ
ଗୁରୁ ଲଘୁ ଭାବର ମୂଳ କାରଣ ।
ଯେ ଆଶା କରିଥାଏ ଧନ ଅଳପ
ପାଇଗଲେ ଅଧିକ ବଢ଼େ ବହପ
ସେ ହୁଏ ପରା,
ମଦମତ୍ତେ ମଣଇ ଧରାକୁ ସରା ।
ଧନକୁ ନେଇ ସଦା ମନର ଗତି,
କେ ପ୍ରତିରୋଧିବ ତା' ନାହିଁ ବିରତି ।

ରାଜନ୍ ଦୁଧୁକ୍ଷସି ଯଦି କ୍ଷିତିଧେନୁମେନା
ତେନାଦ୍ୟବତ୍ସମିବ ଲୋକମନ୍ଗଂ ପୁଷାଣ ।
ତସ୍ମିଂଶ୍ଚ ସମ୍ୟଗନିଶଂ ପରିପୁଷ୍ୟ ମାଣେ
ନାନାଫଳଂ ଫଳତି କଳ୍ପଲତେବ ଭୂମି ।୩୮ ।

ହେ ରାଜନ୍ ! ଏ ଧରା ଧାମକୁ-
ଶାସନ କରିବାପାଇଁ ସୁଖ ସନ୍ତୋଷରେ,
ଶ୍ରଦ୍ଧା ଓ ଶାନ୍ତିରେ,
ପାଳନ କରନ୍ତୁ ତେବେ ପୁତ୍ର ସମ ପ୍ରଜା,
ଉଡ଼ିବ ହେ ଯଶ କୀର୍ତ୍ତି ଧ୍ୱଜା ।
ସେମାନେ ରହିବେ ଯଦି ସୁଖ ଭାଗ୍ୟ ବହି
ଧନ ଧାନ୍ୟେ ପରିପୂର୍ଣ୍ଣ ହେବ ତେବେ ମହି,
କଳ୍ପଲତା ତୁଲ
ହୋଇବ ଅତୁଳ ।

ସତ୍ୟାନୃତା ଚ ପରୁଷା ପ୍ରିୟବାଦିନୀ ଚ
ହିଂସ୍ରା ଦୟାଳୁରପି ଚାର୍ଥପରା ବଦାନ୍ୟା ।
ନିତ୍ୟବ୍ୟୟା ପ୍ରଚୁରନିତ୍ୟଧନାଗମା ଚ
ବାରାଙ୍ଗନେବ ନୃପନୀତିରନେକରୂପା ।୩୯ ।

ରାଜନୀତି ରାଜନୀତି !
ସରଳ ରେଖାର ସାରଲ୍ୟ ନାହିଁ
ବକ୍ର ଏହାର ଗତି ।
କେତେବେଳେ ସତ କେତେବେଳେ ମିଛ
ଯେତେବେଳେ ଯାହା ଲୋଡ଼ା
ଚାଟୁକଥା କହି ମନକୁ ତୋଷନ୍ତି
କଟୁ କଥା କହି ପୀଡ଼ା ।-

ଦିଅନ୍ତି ମନରେ, ଦୟାବି ଦେଖାନ୍ତି,
ହୁଅନ୍ତି ପୁଣି ଦାରୁଣ,
ଦାନୀ ପଣେ ଜନ ମନ କିଣିଥାନ୍ତି
ସମୟେ ଭାରି କୃପଣ ।
ବାରାଙ୍ଗନା ସମ ଲାଭ କରନ୍ତି ସେ
ପ୍ରଚୁର ଧନ ସମ୍ପତ୍ତି
ଆଜି ଯେ ଅମିର କାଲି ସେ ଫକିର
ବହୁରୂପୀ ରାଜନୀତି ।

ବିଦ୍ୟା କୀର୍ତ୍ତିଃ ପାଳନଂ ବ୍ରାହ୍ମଣାନାଂ
ଦାନଂ ଭୋଗୋ ମିତ୍ରସଂରକ୍ଷଣଂ ଚ ।
ଯେଷାମେତେ ଷଡ଼୍‌ଗୁଣା ନ ପ୍ରବୃତ୍ତାଃ
କୋଽର୍ଥସ୍ତେଷାଂ ପାର୍ଥିବୋପାଶ୍ରୟେଣ ।୪୦ ।

ବିଦ୍ୟାରେ ନିପୁଣ, କୀର୍ତ୍ତି ମହୀୟାନ,
ବ୍ରାହ୍ମଣ ପାଳନେ ନିତି
ଦୀନ ଜନେ ଦାନ, ଭୋଗରେ ସଂଯମ,
ମିତ୍ର ସଂରକ୍ଷଣେ ବ୍ରତୀ ।
ଏହି ଷଡ଼୍‌ଗୁଣ ହୀନ-
ନୃପତି ଆଶ୍ରୟେ ରହିଲେ କି ଲାଭ,
ଜୀବନଟି ବ୍ୟର୍ଥ ଜାଣ ।

ଯଦ୍ଧାତ୍ରା ନିଜ ଭାଲପଟଲିଖିତଂ ସ୍ତୋକଂ ମହଦ୍‌ବା ଧନଂ
ତତ୍ ପ୍ରାପ୍ନୋତି ମରୁସ୍ଥଳେଽପି ନିତରାଂ ମେରୌ ଚ ନ ତୋଽଧିକଂ,
ତଦ୍ଧୀରୋ ଭବବିତ୍ତବସ୍ତୁ କୃପଣାଂ ବୃତ୍ତଂ ବୃଥା ମା କୃଥାଃ
କୂପେ ପଶ୍ୟ ପୟୋନିଧାବପି ଘଟୋ ଗୃହ୍ଣାତି ତୁଲ୍ୟଂ ଜଳଂ ।୪୧ ।

ଏକି ଅଟେ ବିଚିତ୍ର ସ୍ୱଭାବ !
ମଣିଷ ହୁଏନି ତୃପ୍ତ, ଯା' ପାଇଛି ସେ ବିଭୁ ବିଭବ ।
ନିଜ ଭଲପଟେ ଯାହା ହୋଇଅଛି ଲେଖା-
ସେତିକି ମିଳଇ, ବୃଥା ଧନୀପଦେ ଭିକ୍ଷା ।

ମରୁପଥେ ଥାଅ ଅବା, ଥାଅ ମେରୁପଥେ
ଯାହା ମିଳିବାର ତାହା ମିଳିବ ନିଶ୍ଚିତେ,
ଜାଣିଛ ତ ତୁମେ ବନ୍ଧୁଃ ! କୂପରୁ କଳସୀ-
ଭରିବ ଯେତିକି ଜଳ, ସମୁଦ୍ରରୁ ନ ପାଇବ ବେଶି ।
ଧନିକ ପାଖରେ କେବେ ନ ପ୍ରକାଶ ଦୈନ୍ୟ
ଶାନ୍ତ ହୁଅ...ତୃପ୍ତ ହୁଅ, ମଣି ନିଜେ ଧନ୍ୟ,
ଲଭ ହେ ସନ୍ତୋଷ,
ରଖ ସଦା ଭାଗ୍ୟରେ ବିଶ୍ୱାସ ।

•

# ଦୁର୍ଜନ ପ୍ରକରଣ

ଅକରୁଣ ତ୍ୱମ କାରଣ ବିଗ୍ରହଃ
ପରଧନେ ପର ଯୋଷିତିତ ସ୍ପୃହା
ସ୍ୱଜନ ବନ୍ଧୁଜନେଷ୍ୱ ସହିଷ୍ଣୁତା
ପ୍ରକୃତିସିଦ୍ଧମିଦଂ ହି ଦୁରାତ୍ମନାଂ ।୪୨ ।

ଦୁର୍ଜନ ବ୍ୟକ୍ତିର ଆଚରଣ ହୀନ
ଅଟଇ ସେ ନିଷ୍କରୁଣ,
କଳହରେ ଲିପ୍ତ ରହିଥାଏ ସଦା
ପର ଦ୍ରବ୍ୟେ ଥାଏ ମନ ।
ପର ଯୋଷା ରସା ନିନ୍ଦିତ ନିର୍ଲ୍ଲଜ
ହୋଇଥାଏ ଲୋକହସା,
ସୁଜନେ, ସ୍ୱଜନେ, ଅଟଇ ବିରୋଧୀ
ଦୁଷ୍କର୍ମ ମନରେ ବସା ।
ଶଠ ଆଚରଣେ ସିଦ୍ଧ
କେ କରିବ ପ୍ରତିରୋଧ !

ଦୁର୍ଜନଃ ପରିହର୍ତ୍ତ୍ୟବ୍ୟୋ ବିଦ୍ୟୟା ଭୂଷିତୋଽପି ସନ୍
ମଣିନାଲଙ୍କୃତଃ ସର୍ପଃ କିମସୌ ନ ଭୟଙ୍କରଃ ।୪୩ ।

ବିଦ୍ୟାରେ ଭୂଷିତ ହେଲେବି ଦୁର୍ଜନ
ତା' ଠାରୁ ରହିବ ଦୂରେ,
ଅତି ଭୟଙ୍କର ହୃଦୟ ଅନ୍ତର
ନ ଯିବ ବିଶ୍ୱାସ ତା'ରେ ।
ମଣିରେ ଭୂଷିତ ଅଟେ ବୋଲି ସର୍ପ
ନ ଅଟେ କି ଭୟଙ୍କର !
ତା' ଠାରୁ ବିଷାକ୍ତ ଅଟଇ ଦୁର୍ଜନ
କର ତାକୁ ପରିହାର ।

ଜାଡ୍ୟଂ ହ୍ରୀମତି ଗଣ୍ୟତେ ବ୍ରତଶୁଚୌ ଦମ୍ଭଃ ଶୁଚୌ କୈତବଂ
ଶୂରେନିର୍ଘୃଣତା ମୁନୌ ବିମତିତା ଦୈନ୍ୟଂ ପ୍ରିୟାଳାପିନି ।
ତେଜସ୍ୱିନ୍ୟବଲିପ୍ତତା ମୁଖରତା ବକ୍ତବ୍ୟଶକ୍ତିଃ ସ୍ଥିରେ
ତତ୍‌କୋନାମ ଗୁଣୋ ଭବେତ୍ସଗୁଣିନାଂ ଯୋ ଦୁର୍ଜନୈର୍ନାଙ୍କିତଃ ।୪୪ ।

ଦୁର୍ଜନ ବ୍ୟକ୍ତି
ସଦା ବିପରୀତ ଅଟେ ତା' ଗତି ।
ଲଜ୍ଜାବନ୍ତ ନରେ କହେ ସେ 'ଜଡ଼'
ଶୁଚିବନ୍ତେ କହେ 'କପଟୀ' ବଡ଼ ।
ଶୁଦ୍ଧାଚାରୀକୁ ସେ କହେ 'ମାୟାବୀ'
ବୀରକୁ, ଥାଏ ସେ ନିର୍ଦୟ ଭାବି ।
'ମୁଖର' କହଇ, ଯେ ଲୋକ ମୌନ
ମଧୁର ମେଳାପୀ ବ୍ୟକ୍ତିକୁ 'ଦୀନ' ।

'ଗର୍ବୀ' କହିଥାଏ ତେଜସ୍ୱୀ ଜନେ
ବକ୍ତାଙ୍କୁ 'ପ୍ରଗଲ୍‌ଭ' ବୋଲି ସେ ମଣେ ।
ଯେତେକ ଦୁର୍ଜନ ତା' ପାଖେ 'ସାଧୁ'
ବିଷକୁ ମଣଇ, ଅମୃତ ମଧୁ ।
'ଦୁର୍ଗୁଣ ଆରୋପେ' ଦୁର୍ଜନ ନିତି
ସଦା ବିପରୀତ ଅଟେ ତା' ମତି ।।

ଲୋଭଶ୍ଚେଦଗୁଣେନ କିଂ ପିଶୁନତା ଯଦ୍ୟସ୍ତିକିଂ ପାତକୈଃ
ସତ୍ୟଞ୍ଚେତ୍ତପସା ଚ କିଂ ଶୁଚିମନୌ ଯଦ୍ୟସ୍ତି ତୀର୍ଥେନ କିଂ ।
ସୌଜନ୍ୟଂ ଯଦିକିଂ ବଲୈଃ ସ୍ୱ ମହିମା ଯଦ୍ୟସ୍ତି କିଂ ମଣ୍ଡନୈଃ
ସଦ୍‌ବିଦ୍ୟା ଯଦ୍ କିଂ ଧନୈରପଯଶୋ ଯଦ୍ୟସ୍ତି କିଂ ମୃତ୍ୟୁନା ।୪୫ ।

ଦୁର୍ଗୁଣ ଗନ୍ତାଘର ଅଟଇ 'ଲୋଭ'-
ଯା' ଠାରେ ଅଛି, ଅନ୍ୟ ଗୁଣ ବିଭବ-
ନାହିଁ ତା' ଲୋଡ଼ା,
ସବୁ ଦୁର୍ଗୁଣ ତାହା ସହିତ ଯୋଡ଼ା ।

ଠକାମି ଠାରୁ ବଡ଼ ପାତକ ଆଉ-
ନାହିଁ ସଂସାରେ ପରା, ସେ ଗ୍ରହ ରାହୁ ।
ଯେ ସତ୍ୟ ଉପାସକ କି ଲୋଡ଼ା ତପ
ସୌଜନ୍ୟ ଥିଲେ ଲୋଡ଼ାନାହିଁ ଆଟୋପ ।
ମହିମାମୟେ ଲୋଡ଼ାନାହିଁ ଭୂଷଣ
ବିଦ୍ୟାବନ୍ତରେ ଅର୍ଥ କି ପ୍ରୟୋଜନ !
ଅକୀର୍ତ୍ତି, ମାରିଥାଏ ମୂଢ଼ ମାନବେ
ମରଣ କିବା ଲୋଡ଼ା ତା'ର ଏ ଭବେ !

ଶଶୀ ଦିବସଧୂସରୋ ଗଳିତ ଯୌବନା କାମିନୀ
ସରୋବିଗତ ବାରିଜଂ ମୁଖମନକ୍ଷରଂ ସ୍ୱାକୃତେଃ ।
ପ୍ରଭୁର୍ଦ୍ଧନପରାୟଣଃ ସତତଦୁର୍ଗତଃ ସଜ୍ଜନଃ
ନୃପାଙ୍ଗଣଗତଃ ଖଳୋ ମନସି ସପ୍ତଶଲ୍ୟାନି ମେ ।୪୬ ।

ଦିବସେ ନିସ୍ତେଜ ଚନ୍ଦ୍ର ମଳିନ
'ନାରୀ' ଯାର ଅଟେ ଅସ୍ତ ଯୌବନ ।
ପଦ୍ମହୀନ ଅଟେ ଯେ ପୁଷ୍କରିଣୀ
ପରଧନେ ଲୋଭ ଯେ 'ରାଜା' ପୁଣି,
ସୌମ୍ୟ ରୂପ ଥାଇ ଯେ ଅଟେ ମୂକ
ରାଜପରିଷଦ ମଣ୍ଡେ ଚଞ୍ଚକ
ସଜ୍ଜନ ଅଥଚ ଯେ ଅର୍ଥ ହୀନ-
ଦୁର୍ଗତ ଅଟେ ଯା'ର ଜୀବନ,
ଏ ସପ୍ତ, ମୋ ମନ କରନ୍ତି ଉଣା
ଶଲ୍ୟ ବିଦ୍ଧର ମୁଁ ଭୋଗେ ଯନ୍ତ୍ରଣା ।

**ନ କଶ୍ଚିତ୍ ଚଣ୍ଡକୋପାନା ମାତ୍ମୀୟୋ ନାମ ଭୂଭୁଜାଂ**
**ହୋତାରମପି ଜୁହ୍ୱାନଂ ସ୍ପୃଷ୍ଟୋ ଦହତି ପାବକଃ ।୪୭ ।**

ଅଗ୍ନିରେ ଆହୁତି ଢ଼ାଳିଲେ ବି ହୋତା
ସ୍ପର୍ଶ କଲେ ଦିଏ ଜାଳି
କୁପିତ ନରେଶ ଦଣ୍ଡ ଆଚରିଲେ
ପ୍ରିୟା ପ୍ରୀତି ଯାନ୍ତି ଭୁଲି ।
ଯେ' ଯାହା ଲଭିଛି ନିଜସ୍ୱ ପ୍ରକୃତି
କେ କରି ପାରିବ ଆନ,
ଅଗ୍ନିର ଦହନ, ରାଜଦଣ୍ଡଦାନ
କେ' କରିବ ନିବାରଣ ।

**ମୌନାନ୍ମୂକଃ ପ୍ରବଚନ ପଟୁ ର୍ବାତୁଳୋ ଜଳ୍ପକୋ ବା**
**ଧୃଷ୍ଟଃ ପାର୍ଶ୍ୱେଃ ଭବତି ଚ ବସନ୍ ଦୂରତଷ୍ଟା ପ୍ରଗଳଭଃ ।**
**କ୍ଷାନ୍ତ୍ୟା ଭୀରୁର୍ଯଦ ନ ସହତେ ପ୍ରାୟଶୋନାଭିଜାତଃ**
**ସେବା ଧର୍ମଃ ପରମ ଗହନୋ ଯୋଗିନାମପ୍ୟଗମ୍ୟଃ ।୪୮ ।**

ଦୁର୍ଜନ ଭାବେ ମୌନ ଜନକୁ 'ମୂକ'
ବାକ୍‌ପଟୁକୁ ଭାବେ ବାଚାଳ ଏକ ।
ଭାବେ ସେ ମୂର୍ଖ, ପାଶେ ବସିଲେ ତା'ର
ଦୂରେ ବସିଲେ ଭାବେ ଦାମ୍ଭିକ ବୀର ।
ନମ୍ର ବ୍ୟକ୍ତିକୁ ଭାବେ ଭୟାଳୁ ବୋଲି
କ୍ଷମାଶୀଳକୁ କହେ ସେ 'ଭୀରୁ' ଭାଳି
ଯୋଗୀର ସେବା ଧର୍ମ ଅଗମ୍ୟ ତା'ରେ
ସେ ରହେ ସଦା ବିପରୀତ ଭାବରେ-
ଏ'ତ ପ୍ରକୃତି ତା'ର,
ନଥାଏ ତା'ର କଦା ସ୍ଥିର ବିଚାର ।

ଉଭାସିତାଖିଳଖଳସ୍ୟ ବିଶୃଙ୍ଖଳସ୍ୟ
ପ୍ରୋଦ୍‌ଗାତ ବିସ୍ମୃତ ନିଜାଧମକର୍ମ ବୃତ୍ତେଃ ।
ଦୈବାଦବାପ୍ତ ବିଭବସ୍ୟ ଗୁଣବିଷୋଽସ୍ୟ
ନୀଚସ୍ୟ ଗୋଚରଗତୈଃ ସୁଖମାସ୍ୟାତେ କୈଃ ।୪୯ ।

ଦୁର୍ଗୁଣ ପୂରିତ ବିଶୃଙ୍ଖଳିତ ଯେ
ଅଟନ୍ତି ଜନ,
ନିଜକୃତ ନୀଚ କର୍ମେ କ୍ଷୁବ୍ଧ ନୁହେଁ
ତାଙ୍କରି ମନ ।
ଦୈବ ଯୋଗୁ ଯିଏ ଲାଭ କରିଥାନ୍ତି
ବିଭବ ରାଶି,
ଲାଗେ ନାହିଁ ଯଦି ଅନାଥ ଜନର
ସେବାରେ ଆସି ।
ସେପରି ଦୁର୍ମତି ଆଶ୍ରୟ ଲୋଡ଼ିବା
ନୁହଇ ଶ୍ରେୟ,
ନୀଚାଶ୍ରୟ କଲେ ମିଳଇ ନୀଚତା
ନ ଅଟେ ପ୍ରେୟ ।

ଆରମ୍ଭ ଗୁର୍ବୀ କ୍ଷୟିଣୀ କ୍ରମେଣ
ଲଘ୍ୱିପୁରା ବୃଦ୍ଧି ମୂପୈତି ପଶ୍ଚାତ୍,
ଦିନସ୍ୟ ପୂର୍ବାର୍ଦ୍ଧ ପରାର୍ଦ୍ଧ ଭିନ୍ନା
ଛାୟେବ ମୈତ୍ରୀ ଖଳସଜ୍ଜନା ନାଂ ।୫୦ ।

ଆରମ୍ଭେ ନିବିଡ଼ ଖଳଜନ ପ୍ରୀତି,
କ୍ରମେ କ୍ରମେ ହୁଏ କ୍ଷୟ,
ବିପରୀତ ରୀତି ସାଧୁଜନ ପ୍ରୀତି
'ଲଘୁ'ରୁ ଗରିମାମୟ ।

ଦୁର୍ଜନ ସଜ୍ଜନ ପ୍ରୀତି ପରମ୍ପରା
ସକାଳ ବିକାଳ ଛାୟା-
ରୂପେ ପ୍ରତିଭାତ ହୋଇଥାଏ ସଦା,
ଲଘିମା ଗରିମା ମାୟା ।

ମୃଗମୀନସଜ୍ଜନାନାଂ ତୃଣଜଳସନ୍ତୋଷ ବିହିତ ବୃତ୍ତୀ ନାଂ
ଲୁବ୍ଧକଧୀବରପିଶୁନା ନିଷ୍କାରଣମେବ ବୈରିଣୋ ଜଗତି ।୫୧ ।

ମୃଗ ଅଟେ ତୃଣଭୋଜୀ ନୁହେଁ କା' ବଇରି
ମୀନ କରେ ଜଳେ ବାସ, ସେ ଶତ୍ରୁ କାହାରି-
ନୁହେଁ, କିନ୍ତୁ କ୍ରୂର ବ୍ୟାଧ ଧୀବର ତାହାଙ୍କୁ
ଅକାରଣେ ବଧ କରିଥାନ୍ତି ଏ ଜୀବଙ୍କୁ,
ବିଦ୍ୱେଷ ଆଚରି
ଦୁର୍ଜନ ନୁହଇ ମିତ୍ର ସଂସାରେ କାହାରି ।

•

# ସଜ୍ଜନ ପ୍ରକରଣ

ବାଞ୍ଛା ସଜ୍ଜନସଙ୍ଗତୌ ପରଗୁଣେ ପ୍ରୀତିର୍ଗୁରୌ ନମ୍ରତା
ବିଦ୍ୟାୟାଂ ବ୍ୟସନଂ ସ୍ୱଯୋଷିତି ରତି ର୍ଲୋକାପବାଦଭୟଂ ।
ଭକ୍ତିଃ ଶୂଳିନି ଶକ୍ତିରାତ୍ମଦମନେ ସଂସର୍ଗମୁକ୍ତିଃ ଖଲୈ-
ରେତେ ଯେଷୁ ବସନ୍ତି ନିର୍ମଳଗୁଣାସ୍ତେଭ୍ୟୋ ମହଦ୍ଭ୍ୟୋ ନମଃ ।୫୨ ।

ସଜ୍ଜନ ସଙ୍ଗତି ପରଗୁଣେ ପ୍ରୀତି
ଗୁରୁଜନେ ନମ୍ରଭାବ,
ବିଦ୍ୟା ଆହରଣେ ବ୍ୟାକୁଳିତ ମନ
ଭୟ, ଲୋକଅପବାଦ ।
ସ୍ୱକୀୟା ଶୃଙ୍ଗାର ସଂଯମ ବେଭାର
ଆତ୍ମ ସଂଯମନେ ଶକ୍ତି
ଦୁର୍ଜନ ସଂସର୍ଗୁ ଦୂରେ ରହି ନିତି
ଥାପି ଶିବପଦେଭକ୍ତି,
ଯେ ଶୁଦ୍ଧନିର୍ମଳ ଗୁଣେ-
ପରିପୂର୍ଣ୍ଣ, ତାଙ୍କୁ ଜଣାଏ ପ୍ରଣାମ
ବିବୁଧ ସଜ୍ଜନ ମଣେ ।

ବିପଦି ଧୈର୍ଯ୍ୟ ମଥାଭ୍ୟୁଦୟେ କ୍ଷମା
ସଦସି ବାକ୍‌ପଟୁତା ଯୁଧି ବିକ୍ରମଃ ।
ଯଶସି ଚାଭିରୁଚିର୍ବ୍ୟସନଂ ଶ୍ରୁତୌ
ପ୍ରକୃତି ସିଦ୍ଧମିଦଂ ହି ମହାତ୍ମନାଂ ।୫୩ ।

ବିପଦରେ ଧୈର୍ଯ୍ୟ ଧରନ୍ତି ସଦା ସାଧୁ ସୁଜନ
ସମ୍ପଦେ ହୁଅନ୍ତି ଉଦାର କ୍ଷମାଶୀଳ ସଜ୍ଜନ ।
ସଭାରେ ପାଣ୍ଡିତ୍ୟ ପ୍ରକାଶି ବାକ୍ ପଟୁତା ବଳେ
ଯୁଦ୍ଧରେ ବିକ୍ରମ ଦେଖାନ୍ତି ସ୍ୱୀୟ ଶକ୍ତି ବିସ୍ତାରେ ।
ଯଶ ଲାଭ ପାଇଁ ଆଗ୍ରହ, ସଦା ବିଦ୍ୟା ବିବୁଧ
ମହାନ୍ ବ୍ୟକ୍ତିର ଏ ଗୁଣ ଅଟେ ପ୍ରକୃତି ସିଦ୍ଧ ।

କରେ ଶ୍ଲାଘ୍ୟସ୍ତ୍ୟାଗଃ ଶିରସି ଗୁରୁପାଦ ପ୍ରଣୟିତା
ମୁଖେ ସତ୍ୟାବାଣୀ ବିଜୟୀ ଭଜୟୋର୍ବୀର୍ଯ୍ୟ ମତୁଳଂ ।
ହୃଦି ସ୍ୱେଚ୍ଛାବୃତ୍ତିଃ ଶ୍ରୁତମଧିଗତଞ୍ଚ ଶ୍ରବଣୟୋ-
ର୍ବିନାପ୍ୟୈଶ୍ୱର୍ଯ୍ୟେଣ ପ୍ରକୃତି ମହତାଂ ମଣ୍ଡନ ମିଦଂ ।୫୪ ।

ସଜ୍ଜନ ବ୍ୟକ୍ତିର ହୃଦୟ ଉଦାର
ପ୍ରକୃତି ମଧୁର ସେ ନୀତିବାନ,
ଦାନକରି ଗୁପ୍ତରଖନ୍ତି ସେ କଥା
ଗୁରୁଙ୍କ ପଦରେ ସଦା ଶରଣ ।
ସେ ସତ୍ୟଶୀଳ
ଶକ୍ତି ଅତୁଳ,
ହୃଦୟେ ସନ୍ତୋଷ ବହିଥାନ୍ତି ସଦା
କର୍ଣ୍ଣେ ଶାସ୍ତ୍ରବାଣୀ, ସେ ଶାନ୍ତଶୀଳ ।
ହେଲେବି ଜୀବନେ ଐଶ୍ୱର୍ଯ୍ୟହୀନ
ମଣ୍ଡିଥାଏ ତାଙ୍କୁ ଗୁଣ ଭୂଷଣ ।।

ପ୍ରାଣାଘାତାନ୍ନିବୃତ୍ତଃ ପରଧନ ହରଣେ ସଂଯମଃ ସତ୍ୟବାକ୍ୟଂ
କାଳେ ଶକ୍ତ୍ୟା ପ୍ରଦାନଂ ଯୁବତୀ ଜନକଥା ମୂକ ଭାବଃ ପରେଷାଂ ।
ତୃଷ୍ଣାସ୍ରୋତୋବିଭଙ୍ଗୋ ଗୁରୁଷୁ ଚ ବିନୟଃ ସର୍ବଭୂତାନୁକମ୍ପା
ସାମାନ୍ୟ ସର୍ବଶାସ୍ତ୍ରେଷ୍ୱନୁପହତ ବିଧିଃ ଶ୍ରେୟଷାମେଷ ପନ୍ଥାଃ ।୫୫ ।

ଜୀବହତ୍ୟା କରନ୍ତିନି କେବେ ହେଁ ସଜ୍ଜନ
ପରଦ୍ରବ୍ୟ କରନ୍ତିନି ସେ ଅପହରଣ,
ସେ ଅଟନ୍ତି ସତ୍ୟବାଦୀ ସଂଯମୀ ପୁରୁଷ
ଯୁବତୀ ଜନ କଥାରେ ନ ମିଳେ ସନ୍ତୋଷ;
କାନ ଦିଅନ୍ତିନି ତହିଁ,
ନିର୍ମଳ ରଖନ୍ତି ମନ ଗୁରୁପଦ ଧ୍ୟାୟୀ ।

ଶକ୍ତି ଅନୁସାରେ ଦାନ କରନ୍ତି ସେ ନିତି
ତୃଷ୍ଣାତୁର ନୁହନ୍ତି ସେ, 'ସନ୍ତୋଷ' ସମ୍ପତ୍ତି ।
ଅଟନ୍ତି ସେ ସମଦର୍ଶୀ ଅନୁକମ୍ପା ଶୀଳ,
ଶାସ୍ତ୍ର ଅଭିଳାଷୀ, ଚିନ୍ତା ପ୍ରାଣୀଙ୍କ ମଙ୍ଗଳ
ଶ୍ରେୟଭାବ ନେଇ,
ଶ୍ରେୟ ପଥେ ଚାଲନ୍ତି ସେ ଶ୍ରେୟତାର-
ଜୟ ଗାନ ଗାଇ ।

**ସମ୍ପତ୍ସୁ ମହତାଂ ଚିତ୍ତଂ ଭବେଦୁତ୍ପଳ କୋମଳଂ**
**ଆପତ୍ସୁତ ମହାଶୈଳଶିଳାସଂଘାତ କର୍କଶଂ ।୫୬ ।**

ସାଧୁ ସଜ୍ଜନ ଚିତ୍ତ ଅଟେ କୋମଳ
କୋମଳପଣେ ସମ ନୁହେ ଉତ୍ପଳ
ସମ୍ପଦ ବେଳେ,
କଠିନ କଠୋର ସେ' ବିପଦକାଳେ ।
ସତେବା ଅଟଇ ସେ କର୍କଶ ଶିଳା
ପାରିବ ନାହିଁ ଭେଦି, ବିପଦ କିଳା
ବିପଦେ ସ୍ଥିର,
ସମ୍ପଦେ ବିପଦରେ ସେ ନିର୍ବିକାର ।

**ପ୍ରିୟା ନ୍ୟାଯ୍ୟା ବୃତ୍ତିର୍ମଳିନମ ସୁଭଙ୍ଗେଽପ୍ୟସୁକରଂ**
**ତ୍ୱସନ୍ତୋନାଭ୍ୟର୍ଥାଃ ସୁ ହୃଦପି ନ ଯାଚ୍ୟଃ କୃଶଧନଃ ।**
**ବିପଦ୍ୟୁଚ୍ଚୈଃ ସ୍ଥୈର୍ଯ୍ୟଂ ପଦମନୁବିଧେୟଂ ଚଂ ମହତାଂ**
**ସତାଂ କେନୋଦ୍ଦିଷ୍ଟଂ ବିଷମମସିଧାରାବ୍ରତମିଦଂ ।୫୭ ।**

କଠୋର ଅନୁଶାସନ ବ୍ରତ ଖଡଗ ଧାରେ
ସଜ୍ଜନ ଚଳନ୍ତି ନିତି, ପାଳନ୍ତି ବିଧିରେ ।
ନ୍ୟାୟପ୍ରିୟ ବ୍ୟକ୍ତି ସେ'ତ ଦୁଷ୍କର୍ମ ବର୍ଜିତ
ସ୍ଥିରମନେ ପୂଜ୍ୟ ଜନେ କରନ୍ତି ଚର୍ଚ୍ଚିତ ।

ଖଳ ଜନେ ସେ କଠୋର, ମିତ୍ର ପାଶେ କେବେ
ସେ ହାତ ପତାନ୍ତି ନାହିଁ ଉତ୍କଟ ଅଭାବେ
ନୀତିନିଷ୍ଠ ଅଟନ୍ତି ସଜ୍ଜନ,
କର୍ତ୍ତବ୍ୟରେ ଅଟନ୍ତି ମହାନ ।

ପ୍ରଦାନଂ ପ୍ରଚ୍ଛନଂ ଗୃହମୁପଗତେ ସମ୍ଭ୍ରମବିଧଃ
ପ୍ରିୟଂ କୃତ୍ୱା ମୌନଂ ସଦସି କଥନଂ ଚାପ୍ୟୁପକୃତେଃ ।
ଅନୁତ୍ସେକୋ ଲକ୍ଷ୍ମ୍ୟାଂ ନିରଭିଭବସାରାଃ ପରକଥାଃ
ସତାଂ କେନୋଦ୍ଦିଷ୍ଟଂ ବିଷମମସିଧାରା ବ୍ରତମିଦଂ । ୫୮ ।

ସଦା ସଜ୍ଜନ !
ଦାନ ଦେଇ ମଧ୍ୟ ପ୍ରକାଶ କରନ୍ତି -
ନାହିଁ ସେ ପୁଣ୍ୟ ।
ଅତିଥି ସତ୍କାରେ ସଦା ତତ୍ପର
ନିରବେ କରନ୍ତି ପରୋପକାର,
ଅନ୍ୟର ମଙ୍ଗଳ କାମନା ମନେ
ସଦ୍ ଉପଦେଶ ଦିଅନ୍ତି ଜନେ ।
ସମ୍ପଦରେ ନମ୍ର ରହନ୍ତି ସଦା
ପରନିନ୍ଦା ନକରନ୍ତି ସେ କଦା,
ସତ୍‌ପଥରେ ଗତି କରନ୍ତି ନିତି
ସଜ୍ଜନ ବ୍ୟକ୍ତିର ସଜ୍ଜନ ପ୍ରୀତି ।

ସନ୍ତପ୍ତାୟସି ସଂସ୍ଥିତସ୍ୟ ପୟୋସୋ ନାମାପି ନ ଶ୍ରୂୟତେ
ମୁକ୍ତାକାରତୟା ତଦେବନଳିନୀପତ୍ରସ୍ଥିତଂ ଦୃଶ୍ୟତେ ।
ଅନ୍ତଃସାଗରଶୁକ୍ତି ମଧ୍ୟପତିତଂ ତନ୍‌ମୌକ୍ତିକଂ ଜାୟତେ
ପ୍ରାୟେଣାଧମ ମଧ୍ୟମୋତ୍ତମଗୁଣାଃ ସଂସର୍ଗତୋ ଦେହିନଂ । ୫୯ ।

ତପ୍ତ ଲୌହେ ପଡେ ଯଦି, ବିନ୍ଦୁ ଏକ ଜଳ
ନିମିଷକେ ହଜିଯାଏ ତା'ଚିହ୍ନ ସକଳ ।
ପଦ୍ମପତ୍ରେ ପଡିଲେ ସେ ଦିଶେ ମୁକ୍ତା ପରି
ସ୍ୱାତିନକ୍ଷେତ୍ରେ ସାଗରେ ଶାମୁକାରେ ପଡି-

ମୁକ୍ତାରେ ସେ ପରିଣତ ହୋଇଥାଏ କାଳେ
ସମୁଦ୍ର ଗର୍ଭରେ ଏହା ତା' ସାନିଧ ବଳେ ।
ମଣିଷ ହୁଏ ଅଧମ, ମଧମ, ଉତ୍ତମ
ସଂସର୍ଗ ଦୋଷର ଏହା ଅଟେ ପରିଣାମ
ସତ୍‌ସଙ୍ଗ ଆଶ୍ରୟ,
ହେଉ ସଦା ଜୀବନର ଧେୟ ।

ଯଃ ପ୍ରୀଣୟେସ୍କୁ ଚରିତୈଃ ପିତରଂ ସ ପୁତ୍ରଃ
ଯଦ୍‌ଭର୍ତ୍ତୁରେବ ହିତମିଛତି ତତ୍କଳତ୍ରଂ ।
ତନ୍‌ମିତ୍ରମାପଦି ସୁଖେ ଚ ସମତ୍ରିୟଂ ଯ -
ଦେତତ୍ତ୍ରୟଂ ଜଗତି ପୁଣ୍ୟୋ ପୁଣ୍ୟୋକୃତୋ ଲଭନ୍ତେ । ୬୦ ।

ନିଜର ପ୍ରିୟ କର୍ମେ ଯେ ତୋଷେ ପିତା
'ସୁପୁତ୍ର' ଅଟେ ପାଳି ପୁତ୍ର ସଂହିତା ।
ପତିଙ୍କ ମଙ୍ଗଳ ଯେ କରେ କାମନା
'ସୁପତ୍ନୀ'ଭାବେ ସିଏ ହୁଅନ୍ତି ଗଣା ।
ସମଭାବନା ଯା'ର ସୁଖ ଦୁଃଖରେ
ସେ ଗଣ୍ୟ ସଦା 'ସ୍ନେହୀବନ୍ଧୁ' ଭାବରେ ।
ଭାଗ୍ୟରେ ଥିଲେ ମିଳିଥାନ୍ତି ଏ ତିନି
ସ୍ନେହ ସୁଖ ଶାନ୍ତିର ତୀର୍ଥ ତ୍ରିବେଣୀ ।

ନମ୍ରତ୍ୱେନୋନ୍ନମନ୍ତଃ ପରଗୁଣ କଥନୈଃ ସ୍ୱାନ୍ ଗୁଣାନ୍ ଖ୍ୟାପୟନ୍ତଃ
ସ୍ୱାର୍ଥାନ୍ ସମ୍ପାଦୟନ୍ତୋ ବିତତପୃଥୁ ତରାରମ୍ଭ ଯତ୍ନାଃ ପରାର୍ଥେ ।
କ୍ଷାନ୍ତ୍ୟୈବାକ୍ଷପରୁକ୍ଷାକ୍ଷର ମୁଖର ମୁଖାନ୍ ଦୁର୍ଜନାନ୍ ଦୂଷୟନ୍ତଃ
ସନ୍ତଃ ସାଶ୍ଚର୍ଯ୍ୟଚର୍ଯ୍ୟା ଜଗତି ବହୁମତାଃ କସ୍ୟ ନାଭ୍ୟର୍ଚ୍ଚନୀୟାଃ । ୬୧ ।

ସଜ୍ଜନ ହୁଅନ୍ତି ଉଚ୍ଚ, ନମ୍ର ଭାବ ବହି
ଅନ୍ୟର ସୁଗୁଣଗାନେ ସ୍ୱ ଗୁଣ ବଢ଼ଇ,
ପରକର୍ମ ସମ୍ପାଦନେ ସ୍ୱକର୍ମ ସାଧିତ
ପରସେବା ଉପକାରେ ସେ ସଦା ପୂଜିତ ।

କ୍ଷମାଗୁଣେ ଖଳଜନେ କରନ୍ତି ଆୟତ୍ତ
ସଜ୍ଜନ ସୁଗୁଣେ ସର୍ବେ ସଦା ବିମୋହିତ
ଏତ ସଜ୍ଜନ ସୌରଭ,
ପ୍ରସାରଣେ ପ୍ରକଟିତ ହୁଅଇ ଗୌରବ ।

•

# ପରୋପକାର ପ୍ରକରଣ

ଭବନ୍ତି ନମ୍ରାସ୍ତରବଃ ଫଳୋଦ୍‌ଗମୈଃ
ନବାମ୍ବୁଭିର୍ଦ୍ଦୂର ବିଲମ୍ବିନୋ ଘନାଃ,
ଅନୁଦ୍ଧତାଃ ସତ୍‌ପୁରୁଷାଃ ସମୃଦ୍ଧିଭିଃ
ସ୍ୱଭାବ ଏବୈଷ ପରୋପକାରିଣାଂ । ୬୨ ।

ଫଳ ଭାରେ ନତ ହୁଅନ୍ତି ପାଦପ
ସୁଗୁଣେ ମହତ୍ ଜନ,
ବର୍ଷଣମୁଖୀ ଘନ ଅମ୍ବୁଦ
ଅମ୍ବରେ ଚଳମାନ ।
ସମୃଦ୍ଧ ଯେବେ ମହତ ପୁରୁଷ
ନଥାଏ ଉଗ୍ର ଭାବ,
ପର ଉପକାରେ ସନ୍ତୋଷ ସଦା
ଅଟଇ ସାଧୁ ସ୍ୱଭାବ ।

ଶ୍ରୋତ୍ରଂ ଶ୍ରୁତେ ନୈବ ନ କୁଣ୍ଡଳେନ
ଦାନେନ ପାଣିର୍ନତୁ କଙ୍କଣେନ ।
ବିଭାତି କାୟଃ କରୁଣାକୁଳାନାଂ
ପରୋପକାରେଣ ନ ଚନ୍ଦନେନ । ୬୩ ।

କର୍ଣ୍ଣରେ କୁଣ୍ଡଳ ଶୋଭା ପାଇବକି
ପାଣ୍ଡିତ୍ୟ ନାହିଁ ଯା'ର,
ଦାନ ହୀନେ କେବେ, ଶୋଭା ପାଇବକି
କଙ୍କଣ କରେ ତା'ର ।
ଯେ କରୁଣାହୀନ, ହେଲେବି ସୁଠାମ
ଶୋଭାପାଏ ନାହିଁ ତନୁ,
ଚନ୍ଦନେ ବଢ଼େକି ଶରୀରର ଶୋଭା
ପର ଉପକାର ବିନୁ !

ପଦ୍ମାକରଂ ଦିନକରୋ ବିକଚଂ କରୋତି
ଚନ୍ଦ୍ରୋବିକାସୟତି କୈରବଚକ୍ରବାଳଂ ।
ନାଭ୍ୟର୍ଥିତୋ ଜଳଧରୋଽପି ଜଳଂ ଦଦାତି
ସନ୍ତଃ ସ୍ୱୟଂ ପରହିତେ ବିହିତାଭିଯୋଗାଃ । ୬୪ ।

ବିକଚିତ ହୁଏ ପଦ୍ମ ତଡାଗେ
ଦିବାକର ଆଗମନେ,
କୁମୁଦିନୀ ହସେ ଚାରୁ ଚନ୍ଦ୍ରମା
ବିମଳ ଜ୍ୟୋତ୍ସ୍ନାୟନେ ।
ମେଘମଣ୍ଡଳୁ ଜଳଧାରା ଝରେ
ଜଗତ ଜୀବନ ପରା,
ପରହିତ ପାଇଁ ସାଧୁ ସଜ୍ଜନ
ଢ଼ାଳନ୍ତି କରୁଣା ଧାରା ।
ଏ'ତ ସଜ୍ଜନ ରୀତି,
ଶାଶ୍ୱତ ସେବା ପ୍ରୀତି ।

ଏତେ ସତ୍ପୁରୁଷାଃ ପରାର୍ଥଘଟକାଃ ସ୍ୱାର୍ଥାନ୍ ପରିତ୍ୟଜ୍ୟ ଯେ
ସାମାନ୍ୟାସ୍ତୁ ପରାର୍ଥମୁଦ୍ୟମଭୃତଃ ସ୍ୱାର୍ଥାବିରୋଧେନ ଯେ ।
ତେଽମୀ ମାନୁଷରାକ୍ଷସାଃ ପରହିତଂ ସ୍ୱାର୍ଥାୟ ନିଘ୍ନନ୍ତି ଯେ
ଯେ ତୁ ଘ୍ନନ୍ତି ନିରର୍ଥକ ପରହିତଂ ତେ କେ ନ ଜାନୀମହେ । ୬୫ ।

ପରସ୍ୱାର୍ଥ ପାଇଁ ନିଜ ସ୍ୱାର୍ଥ ତ୍ୟାଗ
କରନ୍ତି ଉତ୍ତମ ଜନ,
ପରସ୍ୱାର୍ଥ ସହ ସ୍ୱ ସ୍ୱାର୍ଥ ସାଧନେ
'ମଧମେ' ଦିଅନ୍ତି ମନ ।

ନିଜ ସ୍ୱାର୍ଥ ପାଇଁ ପରସ୍ୱାର୍ଥ ନିତି
କରିଥାଏ ଯେହ୍ନୁ ନାଶ,
ଏପରି ଅଧମ ବ୍ୟକ୍ତିକୁ କହିବା
ମଣିଷରୂପୀ ରାକ୍ଷସ ।
ସେ କି ମଣିଷରେ ଗଣା !
ଉତ୍ତମ, ମଧ୍ୟମ, ଅଧମରୁ ମଧ୍ୟ
ସେ ଅଟଇ ସଦା ଊଣା ।

ପାପାନ୍ନିବାରୟତି ଯୋଜୟତେ ହିତାୟ
ଗୁହ୍ୟଂ ନିଗୂହତି ଗୁଣାନ୍ ପ୍ରକଟୀକରୋତି ।
ଆପଦ୍ ଗତଂ ଚ ନ ଜହାତି ଦଦାତି କାଳେ
ସନ୍ମିତ୍ର ଲକ୍ଷଣମିଦଂ ପ୍ରବଦନ୍ତି ସନ୍ତଃ ।୬୬ ।

ପାପ ଆଚରଣୁ ମନକୁ ସଦାରଖେ ସେ ଦୂରେ
ସତ୍‌କାର୍ଯ୍ୟ ସାଧନେ ସେ ସଦା ଲାଗେ ମନେ, ଅନ୍ତରେ,
ଗୁପ୍ତକଥା କା'ରେ ନ କହେ, ହେଉ ଯେତେ ବିଶ୍ୱାସୀ
ସାଧୁସନ୍ଥ ଗୁଣ ସମାଜେ ସିଏ ଥାଏ ପ୍ରକାଶି ।

ସଙ୍ଗଛଡା କେବେ ହୁଏନି ପଡୁ ଯେତେ ବିପଦ
ଦାନ ପୁଣ୍ୟେ ମନ ନିବେଶ କରିଥାଏ ସତତ,
'ସୁ' ବନ୍ଧୁର ଏହା ଲକ୍ଷଣ ଅଟେ ଏ' ଶାସ୍ତ୍ରବାଣୀ
ବନ୍ଧୁତା ପାଳନ ଦିଗରେ ଏତ ଶୁଭ ସରଣି ।

କ୍ଷୀରେଣାତ୍ମ ଗତୋଦକାୟ ହି ଗୁଣା ଦତ୍ତାଃ ପୁରା ତେଽଖିଳାଃ
କ୍ଷୀରୋତ୍ତାପମବେକ୍ଷ ତେନପୟସା ସ୍ୱାତ୍ମାକୃଶାନୌ ହୁତଃ ।
ଗନ୍ତୁ ପାବକମୁନ୍ମନସ୍ତଦଭବଦ୍ଦୃଷ୍ଟ୍ୱା ତୁ ମିତ୍ରାପଦଂ,
ଯୁକ୍ତଂ ତେନ ଜଳେନ ଶାମ୍ୟତି ସତାଂ ମୈତ୍ରୀ ପୁନସ୍ତ୍ୱୀଦୃଶୀ ।୬୭ ।

ସାଧୁ ସନ୍ଥ ସମ୍ପର୍କ ଅଟେ ମହାନ୍
ଯେପରି କ୍ଷୀର ନୀର ସମ୍ପର୍କ ପୁଣ ।
କ୍ଷୀରେ ମିଶିଲେ ନୀର, ତା'ରୂପ ନିଏ
ଉଭୟ ବନ୍ଧୁଙ୍କର ମିଳନ ହୁଏ -
ଅତିନିବିଡ,
ହୁଅନ୍ତି ନାହିଁ କେବେ ସେ ଛାଡବାଡ ।

ଉତ୍ତାପେ କ୍ଷୀରୁ ନୀର ଅଗ୍ନିରେ ପଶେ
ସନ୍ତାପେ କ୍ଷୀର ଯାଇ ତା' ସାଥେ ମିଶେ ।
ଅଟଇ ଏହା ତା'ର ବନ୍ଧୁତା ପଣ,
ଏପରି ଘଟେ ହେଲେ ସେ ବନ୍ଧୁହୀନ ।
ସାଧୁଜନଙ୍କ -
ବନ୍ଧୁତା ଚିର କ୍ଷୀର ନୀର ସମ୍ପର୍କ ।

ଇତଃ ସ୍ୱପିତି କେଶବଃ କୁଳମିତସ୍ତଦୀୟ ଦ୍ୱିଷା -
ମିତଶ୍ଚ ଶରଣାର୍ଥିନାଂ ଶିଖରିଣାଂ ଗଣାଃ ଶେରତେ ।
ଇତୋଽପି ବଡ଼ବାନଳଃ ସହ ସମସ୍ତସଂବର୍ତ୍ତକୈଃ
ଅହୋ ବିତତମୂର୍ଜିତଂ ଭରସହଞ୍ଚ ସିନ୍ଧୋର୍ବପୁଃ ।୬୮ ।

ସାଗର ବକ୍ଷରେ ବିଷ୍ଣୁ କରନ୍ତି ଶୟନ
ଅନ୍ୟ ପାର୍ଶ୍ୱେ ରହିଥାନ୍ତି ରାକ୍ଷସ ଦୁର୍ଦ୍ଦମ ।

ତା'ମଧ୍ୟେ ଅଛନ୍ତି ପୁଣି ମୈନାକାଦି ଶୈଳ
ସମ୍ବର୍ତ୍ତକ, ମେଘମାଳା, ବଡବ ଅନଳ -
ବାସ କରେ ତହିଁ,
ଉଦାର ସାଗର କେବେ, କା'ରେ କରେ 'ନାହିଁ'।
ସେ'ପରି ଅଟଇ ସାଧୁ ସଜ୍ଜନ ଅନ୍ତର
ସମସ୍ତଙ୍କୁ ଆଶ୍ରା ଦେଇଥାନ୍ତି ନିରନ୍ତର
ଉଦାରତା ଗୁଣେ,
ଏ'ବିଶ୍ୱ ଭୁବନେ ।

ତୃଷ୍ଣାଂଛିନ୍ଧି ଭଜକ୍ଷମାଂ ଜହି ମଦଂ ପାପେ ରତିଂ ମା କୃଥାଃ
ସତ୍ୟଂ ବ୍ରୂହ୍ୟନୁଯାଦି ସାଧୁପଦବୀଂ ସେବସ୍ୱ ବିଦ୍ୱଜ୍ଜନଂ ।
ମାନ୍ୟାନ୍ମାନୟ ବିଦ୍ୱିଷୋଽପ୍ୟନୁନୟ ପ୍ରକ୍ଷାପୟ ପ୍ରଶ୍ରୟଂ
କୀର୍ତ୍ତିଂ ପାଳୟ ଦୁଃଖିତେ କୁରୁ ଦୟାମେତତ୍ସତାଂ ଲକ୍ଷଣଂ । ୬୯ ।

କାମନା ରହିତ କ୍ଷମାଦାନ ବ୍ରତ
ମଦ ଭାବହୀନ ମନ,
ପାପ ପରିହାର ସତ୍‌ପଥେ ବିହାର
କରନ୍ତି ବିବୁଧ ଜନ ।
ସାଧୁ ପଦାଶ୍ରିତ ବିଦଗ୍ଧେ ସେବିତ
ବୈର ଜନେ ଅବା ଶ୍ରଦ୍ଧା,
ଦୀନ ଜନେ ଦୟା ପ୍ରାଜ୍ଞ ଜନେ ଭକ୍ତି
ପ୍ରକାଶନ୍ତି ଯଶପ୍ରଦା ।
ସଜ୍ଜନ ସଦ୍‌ଗୁଣ ଏତ,
କାଳେ କାଳେ ପ୍ରକାଶିତ ।

ମନସି ବଚସି କାୟେ ପୁଣ୍ୟ ପୀୟୂଷ ପୂର୍ଣ୍ଣା,
ସ୍ତ୍ରୀଭୁବନ ମୁପକାର ଶ୍ରେଣିଭିଃ ପ୍ରୀଣୟନ୍ତଃ ।
ପରଗୁଣ ପରମାଣୂନ ପର୍ବତୀକୃତ ନିତ୍ୟଂ
ନିଜହୃଦି ବିକସନ୍ତଃ ସନ୍ତିସନ୍ତଃ କିୟନ୍ତଃ । ୭୦ ।

ସଜ୍ଜନଗଣ ମନ ପୀୟୂଷେ ପରିପୂର୍ଣ୍ଣ
ପରୋପକାର ଭାବ ମନରେ,
ଥାଏ ସର୍ବଦା ଭରି ତ୍ରିଭୁବନେ ସଂଚରି
ସେବା ଶରଧା ଦାନ ବ୍ରତରେ ।

ଅଣୁବତ୍ ସୁଗୁଣ ଦେଖିଲେ କାର ପୁଣ
ପର୍ବତ ସମ କରି କହନ୍ତି,
ନିଜର ଯଶ କେବେ ନକହନ୍ତି କା' ଆଗେ
ନିରବେ ସମ୍ଭ୍ରମରେ ରହନ୍ତି ।
ଏପରି ବ୍ୟକ୍ତି ବିଶ୍ୱେ ବିରଳ
ଅଟନ୍ତି ପୂଜନୀୟ ସକଳ ।

କିଂ ତେନ ହେମଗିରିଣା ରଜତାଦ୍ରିଣାବା
ଯାତ୍ରାଶ୍ରିତା ଷ୍ଟ ତରବସ୍ତରବସ୍ତ ଏବ
ମନ୍ୟାମହେ ମଳୟମେବ ଯଦା ଶ୍ରୟେଣ
କଙ୍କୋଳ ନିମ୍ବକୁଟଜା ହରିଚନ୍ଦନଃ ସ୍ୟୁଃ । ୭୧ ।

ହେଉବା ହେମ ପର୍ବତ, ରଜତ ପର୍ବତ
ବୃକ୍ଷଗଣ ନିଜ ଗୁଣେ ସଦା ପରିଚିତ ।
ମଳୟ ପର୍ବତେ ଯେଉଁ ତରୁଗଣ ଥାନ୍ତି
ମଳୟ ପବନ ସଦା ସେବନ କରନ୍ତି ।
ମଳୟ ପରଶେ ହୋଇଥାନ୍ତି ସେ ଚନ୍ଦନ
ତାଙ୍କୁ ନେଇ ସୃଷ୍ଟି ହୁଏ 'ଚନ୍ଦନବନ' ।
ଏ'ତ ସତ୍‌ସଙ୍ଗର ଫଳ,
ସାଧୁସନ୍ଥ ଆଶ୍ରା କଲେ ହୁଅଇ ମଙ୍ଗଳ ।

•

# ଧୈର୍ଯ୍ୟ ପ୍ରକରଣ

ରତ୍ନୈର୍ମହାବ୍ଧେସ୍ତୁ ତୁଷ୍ଟୁର୍ନ ଦେବା
ନ ଭେଜିରେ ଭୀମବିଷେଣଭୀତିଂ
ସୁଧାଂ ବିନା ନ ପ୍ରୟଯୁର୍ବିରାମଂ
ନ ନିଶ୍ଚିତାର୍ଥାଦ୍ ବିରମନ୍ତି ଧୀରାଃ । ୭୨ ।

ସମୁଦ୍ର ମନ୍ଥନେ ମଗ୍ନ ଦେବଗଣେ
ଲଭିଲେ ଅମାପ ରତ୍ନ
ତଥାପି ସନ୍ତୋଷ ମିଳିଲାନି ତାଙ୍କୁ
କଲେ ପୁଣି ବହୁ ଯତ୍ନ ।
ବିଷ ବଳୟରେ ରହି,
ଅକ୍ଳାନ୍ତ ଉଦ୍ୟମ ଚଳାଇ ରଖିଲେ
ଅମୃତ ଲଭିବା ପାଇଁ ।

ଶେଷରେ ମିଳିଲା ଅମୃତ ତାହାଙ୍କୁ
ହେଲେ ସର୍ବେ ଆନନ୍ଦିତ,
ପ୍ରତିଜ୍ଞା ପାଳନେ ଦୃଢ଼ମନା କେବେ
ହୁଅନ୍ତି ନାହିଁ ବିରତ ।
ମିଳଇ ସାଧନା ଫଳ
ଅତୁଟ ଧୈର୍ଯ୍ୟବଳ ।

ପ୍ରାରଭ୍ୟତେ ନ ଖଳୁ ବିଘ୍ନଭୟେନ ନୀଚୈଃ
ପ୍ରାରଭ୍ୟ ବିଘ୍ନନିହତା ବିରମନ୍ତି ମଧ୍ୟାଃ ।
ବିଘ୍ନୈର୍ମୁହୁ ର୍ମୁହୁ ରପି ପ୍ରତିହନ୍ୟମାନାଃ
ପ୍ରାରବ୍ଧମୁତ୍ତମଗୁଣା ନ ପରିତ୍ୟଜନ୍ତି । ୭୩ ।

ଅଧମ ବିଘ୍ନ ଭୟେ ରହଇ ଦୂରେ
ବିହିତ କର୍ମାରମ୍ଭ କରି ନପାରେ ।
'ମଧ୍ୟମ' ଜନ କୃତ୍ୟ କର୍ମ କରନ୍ତି
ବିଘ୍ନ ଭୟରେ ପୁଣି ସେ ବିରମନ୍ତି ।
'ଉତ୍ତମ' ଲୋକ କେବେ ନକରେ ଦୂର
ଆରମ୍ଭ କରିଥିବା କାମକୁ ତା'ର ।
ମୁହୁର୍ମୁହୁ ବିଘ୍ନରେ ନହୁଏ କ୍ଷାନ୍ତ
ହୋଇଲେ ସମ୍ପାଦିତ ତା' ମନ ଶାନ୍ତ
ଏତ ସାଧୁ ସ୍ୱଭାବ,
ଜୀବନେ ମିଳେ ସଫଳତା ବିଭବ ।

**କ୍ୱଚିଦ୍ଭୂମୌ ଶଯ୍ୟା କ୍ୱଚିଦପିଚ ପର୍ଯ୍ୟଙ୍କଶୟନଂ**
**କ୍ୱଚିଚ୍ଛାକାହାରଃ କ୍ୱଚିଦପି ଚ ଶାଲ୍ୟୋଦନରୁଚିଃ ।**
**କ୍ୱଚିତ୍‌କନ୍ଥାଧାରୀ କ୍ୱଚିଦପି ଚ ଦିବ୍ୟାମ୍ବରଧରୋ ।**
**ମନସ୍ୱୀ କାର୍ଯ୍ୟାର୍ଥୀ ନ ଗଣୟତି ଦୁଃଖଂ ନ ଚ ସୁଖଂ । ୭୪ ।**

ଯେ ଧୈର୍ଯ୍ୟଶୀଳ
ନଥାଏ ତା'ର କିଛି ଶୋଚନା ଛଳ ।
ମିଳୁ ବା ଭୂମିଶଯ୍ୟା ତୁଳିତଳପ
ଅବା ଦଦରା ଖଟ ରତ୍ନପଲଙ୍କ,
ଶାକାନ୍ନ ମିଳୁ, ଶାଳି ଅନ୍ନ ଅଥବା
ଜୀର୍ଣ୍ଣବସନ ପାଟ ପୀତାମ୍ବରୀ ବା ।
ନଥାଏ ଆନନ୍ଦ ବା ଅନୁଶୋଚନା
ସୁଖେ ଦୁଃଖେ ତାଙ୍କର ସମ ଭାବନା,
ସେ ଧୈର୍ଯ୍ୟଶୀଳ
କର୍ମ ଚଞ୍ଚଳ,
ସେ ଉଚ୍ଚ ମନା
ମନସ୍ୱୀ ମଧ୍ୟେ ସଦା ହୁଅନ୍ତି ଗଣା ।

**ନିନ୍ଦନ୍ତୁ ନୀତିନିପୁଣା ଯଦି ବା ସ୍ତୁବନ୍ତୁ**
**ଲକ୍ଷ୍ମୀଃ ସମାବିଶତୁ ଗଚ୍ଛତୁ ବା ଯଥେଷ୍ଟଂ**
**ଅଦ୍ୟୈବ ବା ମରଣମସ୍ତୁ ଯୁଗାନ୍ତରେ ବା**
**ନ୍ୟାଯ୍ୟାତ୍ପଥଃ ପ୍ରବିଚଳନ୍ତି ପଦଂ ନ ଧୀରାଃ । ୭୫ ।**

ନ୍ୟାୟବନ୍ତ ନର ଧୈର୍ଯ୍ୟ ଅସୁମାର
ନୁହନ୍ତି ସେ ବିଚଳିତ,
ନିନ୍ଦାକରୁ ଅବା ସ୍ତୁତି କରୁ କିଏ
ହୁଅନ୍ତିନି ପ୍ରଭାବିତ ।
ଲକ୍ଷ୍ମୀବନ୍ତ ଅବା ନିର୍ଦ୍ଧନ ହୁଅନ୍ତୁ
ଚିନ୍ତିତ ନୁହନ୍ତି କେବେ,
ଦୀର୍ଘ ଦିନ ପରେ ମରଣ ହେଉକି
ଅବା ମୃତ୍ୟୁ ହେଉ ଏବେ ।
ନ୍ୟାୟ ପଥୁ କେବେ ନ ଟଳନ୍ତି ସାଧୁ
ହେଉବା ଜଟିଳ ଯେତେ
ଧୈର୍ଯ୍ୟବଳେ ସିଏ ନ୍ୟାୟରେ ଚଳନ୍ତି
ଅଟଳ ସେ ନ୍ୟାୟପଥେ ।

**କାନ୍ତା କଟାକ୍ଷବିଶିଖା ନ ଲୁନନ୍ତି ଯସ୍ୟ**
**ଚିତ୍ତଂ ନ ନିର୍ଦ୍ଦହତି କୋପ କୃଶାନୁତାପଃ ।**
**ତର୍ଷନ୍ତି ଭୂରି ବିଷୟାଶ୍ଚ ନ ଲୋଭପାଶା**
**ଲୋକତ୍ରୟଂ ଜୟତି କୃତ୍ସ୍ନମିଦଂ ସ ଧୀରଃ ।୭୬ ।**

କମନୀୟ କାନ୍ତା କଟାକ୍ଷ, ଯା'ର ହୃଦୟ ଭେଦ-
କରିନାହିଁ କେବେ ତାହାର, ସଂଯମତା ଅଭେଦ୍ୟ ।
ଯା' ଅନ୍ତର କେବେ ଜଳିନି ତୀବ୍ର କ୍ରୋଧ ଅନଳେ
କାମନା ଲାଳସା ପାଶରେ ବିଦ୍ଧ, ନୁହେଁ ଯେ ବାରେ,
ଧନ୍ୟ ତାଙ୍କ ଧୈର୍ଯ୍ୟ ସାଧନା, ସେ'ତ ଇନ୍ଦ୍ରିୟଜୟୀ
ଦୁର୍ଜ୍ଜୟ ତାଙ୍କର ସାଧନା, ତ୍ରିଭୁବନ ବିଜୟୀ ।

କଦର୍ଥିତସ୍ୟାପି ହି ଧୈର୍ଯ୍ୟବୃତ୍ତେ -
ର୍ନ ଶକ୍ୟତେ ଧୈର୍ଯ୍ୟଗୁଣଂ ପ୍ରମାର୍ଷ୍ଟୁଂ
ଅଧୋମୁଖସ୍ୟାପି କୃତସ୍ୟ ବହ୍ନେ -
ର୍ନାଧଃ ଶିଖାଯାନ୍ତି କଦାଚିଦେବ । ୭୭ ।

ଧୈର୍ଯ୍ୟଶୀଳ ବ୍ୟକ୍ତି ପରୁଷ ବଚନେ
ହେଲେ ମଧ ତିରସ୍କୃତ,
ଧୈର୍ଯ୍ୟ ଆଚରଣୁ ନିବୃତ୍ତ ନୁହନ୍ତି
ରହନ୍ତି ସଦା ସଂଯତ ।

ଯେତେ ତଳେ ନେଇ ଥୋଇଲେ ଦୀପକୁ
ଶିଖା ହୁଏ ଉର୍ଦ୍ଧ୍ୱମୁଖୀ,
ନିମ୍ନତା ତାହାକୁ କରେ ନାହିଁ ନିମ୍ନ
ସଦାତା'ର ଉର୍ଦ୍ଧ୍ୱେ ଗତି ।

ବରଂ ଶୃଙ୍ଗୋତ୍ତ୍ୱଙ୍ଗାଦ୍ ଗୁରୁଶିଖରିଣଃ କ୍ୱାପି ବିଷମେ
ପତିତ୍ୱାୟଂ କାୟଃ କଠିନବୃଷଦନ୍ତେ ବିଗଳିତଃ ।
ବରଂ ନ୍ୟସ୍ତୋହସ୍ତଃ ଫଣିପତି ମୁଖେ ତୀକ୍ଷ୍ଣଦଶନେ
ବରଂ ବହ୍ନୌ ପାତସ୍ତଦପି ନ କୃତଃ ଶୀଳ ବିଲୟଃ । ୭୮ ।

ସମୁଚ୍ଚ ଶିଖରୀ ଶିଖରୁ ପତିତ
ହେଲେବି ପାଷାଣେ ଚୂର୍ଣ୍ଣ,
ଏ ମରଶରୀର, କୁଳ ଶୀଳାଚାର
ରହୁ ଅତୁଟ ଅକ୍ଷୁଣ୍ଣ ।

ଅନନ୍ତ ନାଗର ତୀକ୍ଷ୍ଣ ଦଂଶନରେ
ହେଉବା ଶରୀରପାତ,
ପ୍ରଜ୍ୱଳିତ ଅଗ୍ନି ଶିଖାରେ ଅଥବା
ହେଉ ଶରୀର ନିପାତ ।
କରନାହିଁ ପରିହାର,
ଦୁର୍ଲ୍ଲଭ ଏଭବେ ଅଟଇ ସର୍ବଦା
ନିଜ କୁଳ ଶୀଳାଚାର ।

ବହ୍ନିତସ୍ୟ ଜଳାୟତେ ଜଳନିଧିଃ କୂଲ୍ୟାୟତେ ତତ୍କ୍ଷଣାତ୍,
ମେରୁଃସ୍ୱଳ୍ପଶିଳାୟତେ ମୃଗପତିଃ ସଦ୍ୟଃ କୁରଙ୍ଗୀୟତେ ।
ବ୍ୟାଳୋମାଲ୍ୟଗୁଣାୟତେ ବିଷରସଃ ପୀୟୂଷ ବର୍ଷାୟତେ,
ଯସ୍ୟାଙ୍ଗେଽଖିଳଲୋକ ବଲ୍ଲଭତରଂ ଶୀଳଂ ସମୁନ୍ମୀଳତି । ୭୯ ।

ପ୍ରେମରସେ ପରିପ୍ଳୁତ ଅଟେ ଯା' ହୃଦୟ
ତା' ପାଇଁ ଅଟଇ ଅଗ୍ନି ହିମଜଳ ପ୍ରାୟ ।
ମେରୁ ମଣ୍ଡଳ ସେ ମଣେ ଶିଳାଖଣ୍ଡ ପରି,
ପଶୁରାଜ ନ ଦିଶନ୍ତି ଉଗ୍ରରୂପ ଧାରୀ ।
ସର୍ପ ଜଣାଯାଏ ଯଥା କୁସୁମର ମାଳା
ବିଷରସ ସତେ ଅବା ଅମୃତର ଧାରା ।
ସକଳ ଲୋକ ବଲ୍ଲଭ ଯେଉଁ ସାଧୁଜନ
ସର୍ବଗୁଣେ ପରିପୂର୍ଣ୍ଣ ସେ ଶୀଳ ସମ୍ପନ୍ନ ।
ଏ'ତ ସାଧୁଗଣ
ଅଟନ୍ତି ମହାନ୍ ।

ଛିନ୍ନୋଽପି ରୋହତି ତରୁଃ
କ୍ଷୀଣୋଽପ୍ୟୁପଚୀୟତେ ପୁନଶ୍ଚନ୍ଦ୍ରଃ
ଇତି ବିମୃଶିତଃ ସନ୍ତଃ ସନ୍ତପ୍ୟନ୍ତେ
ନ ବିଶ୍ଳର୍ଥେଷୁ ଲୋକେଷୁ । ୮୦ ।

ବୃକ୍ଷଶାଖା କଲେ ଛେଦନ ପୁଣି ଉଠେ ପଲ୍ଲବି
କ୍ଷୟ ହୋଇ ପୂର୍ଣ୍ଣଚନ୍ଦ୍ରମା ପୁଣି ଉଦନ୍ତି ସେ'ବି,
ସଜ୍ଜନ ସେପରି ବିପଦେ କେବେ ପଡିଲେ ଅବା
ବିଚ୍ୟୁତ ନୁହନ୍ତି ସ୍ୱପଥୁ ଭୁଲି କର୍ତ୍ତବ୍ୟ ସେବା ।

ଐଶ୍ୱର୍ଯସ୍ୟ ବିଭୂଷଣଂ ସୁଜନତା ଶୌର୍ଯ୍ୟସ୍ୟ ବାକ୍‌ସଂଯମଃ
ଜ୍ଞାନସ୍ୟୋପଶମଃ ଶ୍ରୁତସ୍ୟ ବିନୟୋ ବିତ୍ତସ୍ୟ ପାତ୍ରେ ବ୍ୟୟଃ ।
ଅକ୍ରୋଧସ୍ତପସଃ କ୍ଷମା ପ୍ରଭବିତୁର୍ଧର୍ମସ୍ୟ ନିର୍ବ୍ୟାଜତା
ସର୍ବେଷାମପି ସର୍ବକାରଣମିଦଂ ଶୀଳଂ ବରଂ ଭୂଷଣଂ । ୮୧ ।

ଶୌର୍ଯ୍ୟର ଭୂଷଣ 'ବାକ୍‌ସଂଯମତା'
'ସୁଜନତା' ଐଶ୍ୱର୍ଯ୍ୟର,
ଜ୍ଞାନର ଭୂଷଣ ବିଷୟ ବର୍ଜନ
ବିନୟଭାବ ଶାସ୍ତ୍ରର ।

ସତ୍‌ପାତ୍ରରେ ଦାନ ଧନର ମହତ୍ୱ,
କ୍ରୋଧ ସମ୍ବରଣେ ତପୀ,
କ୍ଷମତାଶାଳୀର କ୍ଷମା ଆଚରଣ
ଧର୍ମେ ସମଭାବ ମତି ।
ସୁଗୁଣ ଭୂଷଣ ସର୍ବେ,
ଶୀଳ ସମ୍ବରଣ ସବୁଠୁ ଉତ୍ତମ
ଏ ଜୀବନ ମଧୁ ପର୍ବେ ।

•

# ଦୈବ ପ୍ରକରଣ

ନେତା ଯସ୍ୟ ବୃହସ୍ପତିଃ ପ୍ରହରଣଂ ବଜ୍ରଂସୁରାଃ ସୈନିକାଃ
ସ୍ୱର୍ଗୋ ଦୁର୍ଗମନୁଗ୍ରହଃ ଖଳୁ ହରେରୈରାବତୋ ବାରଣଃ ।
ଇତ୍ୟାଶ୍ଚର୍ଯ୍ୟବଳାନ୍ୱିତୋଽପି ବଳଭିଭଗ୍ନଃପରୈଃ ସଙ୍ଗରେ
ତଦ୍‌ଯୁକ୍ତଂ ନନୁ ଦୈବମେବ ଶରଣଂ ଧିଗ୍ ଧିଗ୍ ବୃଥା ପୌରୁଷଂ । ୮୨ ।

ସେ ଧନ୍ୟ ଧନ୍ୟ,
ଧନ୍ୟ ତାଙ୍କର ପୁଣି ସେ ଇନ୍ଦ୍ରପଣ ।
ଅଟନ୍ତି ବୃହସ୍ପତି ଗୁରୁ ଯାହାର
ଯା'ର ଆୟୁଧ ବଜ୍ର, ସୈନିକ ସୁର,
ସ୍ୱର୍ଗ ଯାହାର ଗଡ, ଶୁଭେଚ୍ଛୁ ହରି
ଯା'ର ବାହାନ ଐରାବତ ଯେ କରୀ
ଏକି ଅଦ୍ଭୁତ,
ଦେବ ଦାନବ ଯୁଦ୍ଧେ ସେ ପରାହତ ।
ହୋଇଲେ ବାର ବାର, ଥାଇ ସକଳ
ନଥିଲେ ଦୈବୀବଳ ସବୁ ବିଫଳ,
ଧିକ୍ ପୌରୁଷପଣ ଥାଇ କି ଲାଭ
ଅନୁକୂଳ ନ ହେବ ଯଦି ଦଇବ
ସବୁ ଅସାର,
କେବଳ କାମ୍ୟ ଦୈବୀ କୃପା ଅପାର ।

ଭଗ୍ନାଶସ୍ୟ କରଣ୍ଡପିଣ୍ଡିତ ତନୋର୍ମ୍ଲାନେନ୍ଦ୍ରିୟସ୍ୟ କ୍ଷୁଧା
କୃତ୍ୱାଖୁର୍ବିବରଂ ସ୍ୱୟଂ ନିପତିତୋ ନକ୍ତଂ ମୁଖେ ଭୋଗିନଃ ।
ତୃପ୍ତସ୍ତତ୍ପିଶିତେନ ସତ୍ୱରମସୌ ତେନୈବ ଯାତଃ ପଥା
ସ୍ୱସ୍ଥାସ୍ତିଷ୍ଠତ୍ ଦୈବମେବ ହି ନୃଣାଂ ବୃଦ୍ଧୌ କ୍ଷୟେ କାରଣଂ । ୮୩ ।

ସାପଟିଏ ଧରି ସାପୁଆ କେଳା
ପେଡ଼ି ଭିତରେ ତା' ପୂରାଇ ଦେଲା,
କ୍ଷୁଧାରେ ଆତୁର ହୋଇଲା ସାପ
ଦୁର୍ବଳ ହେଲା ତା' ବଳ ବହପ ।
ଖାଦ୍ୟ ଲୋଭେ ଏକ ମୂଷିକ ଆସି
ପେଡ଼ି କାଟି କଣା କଲା ସେ ବସି,
ପଶିଲା ଭିତରେ ସେ କଣା ବାଟେ
ଖାଦ୍ୟ ପାଇ ସାପ ଖାଇଲା ପେଟେ ।
କଣା ବାଟେ ସାପ ଗଲା ବାହାରି
ଦୈବୀ ବଳୁ ଦୁଃଖୁ ହୋଇଲା ପାରି,
ଦୈବ ଅଟେ କ୍ଷୟ ବୃଦ୍ଧି କାରଣ
କେ ଏଡ଼ି ପାରିବ ଦୈବୀ ବିଧାନ ।

ଯଥା କନ୍ଦୁକପାତେନୋତ୍ପତତ୍ୟାର୍ଯ୍ୟଃ ପତିନ୍ନପି
ତଥା ତ୍ୱନାର୍ଯ୍ୟଃ ପତତି ମୃତ୍ପିଣ୍ଡପତନଂ ଯଥା । ୮୪ ।

ଊର୍ଦ୍ଧ୍ୱେ ଉଠେ କନ୍ଦୁକ ପଡିବା ମାତ୍ରେ
ସଜ୍ଜନ ତଥା ଉଠିଥାନ୍ତି ତୁରିତେ,
ମୂର୍ଖ ଦୁର୍ଜ୍ଜନ ଉଠି ପଡିଲେ ତଳେ
ଜୀବନେ କେବେ ଆଉ ଉଠି ନପାରେ ।

ସତେବା ଭାଗ୍ୟ ତାର ମାଟିରେ ମୁଦା
ନିମ୍ନରେ ପଡ଼ି ରହିଥାଏ ସେ ସଦା ।

ଆଳସ୍ୟଂହି ମନୁଷ୍ୟାଣାଂ ଶରୀରସ୍ଥୋ ମହାନ୍‌ରିପୁଃ
ନାସ୍ତ୍ୟୁଦ୍ୟମ ସମୋବନ୍ଧୁ ର୍ଯଂକୃତ୍ୱା ନାଽବସୀଦତି । ୮୫ ।

ଆଳସ୍ୟଠାରୁ ବଡ଼ ଶତ୍ରୁ କେ ନୁହେଁ
ଶରୀର ଶକ୍ତି ତେଜ ନିରବେ ଦହେ,
ଉଦ୍ୟମୁବଳି ବନ୍ଧୁ ଆଉକେ ନାହିଁ
ସାର୍ଥକ ଏ ଜୀବନ ସେ ବନ୍ଧୁ ପାଇଁ ।

ଖଲ୍ୱାଟୋ ଦିବସେଶ୍ୱରସ୍ୟ କିରଣୈ ସନ୍ତାପିତୋ ମସ୍ତକେ
ଗଚ୍ଛନ୍ ଦେଶମନାତପଂ ଦ୍ରୁତଗତି ସ୍ତାଳସ୍ୟ ମୂଳଂ ଗତଃ ।
ତତ୍ରାପ୍ୟସ୍ୟ ମହାଫଳେନ ପତତା ଭଗ୍ନଂ ସଶବ୍ଦଂ ଶିରଃ
ପ୍ରାୟୋଗଚ୍ଛତି ଯତ୍ର ଭାଗ୍ୟରହିତ ସ୍ତତ୍ରୈବ ଯାନ୍ତ୍ୟାପଦଃ । ୮୬ ।

ସୂର୍ଯ୍ୟଙ୍କ ପ୍ରଖର କିରଣର ତାପ
ଚନ୍ଦାମୁଣ୍ଡ ସହି ନପାରି
ପ୍ରାଣ ବିକଳରେ ପଳାଇ ଯାଇ ସେ
ତାଳଗଛ ମୂଳ ଆଦରି
ବସିଯାଏ ଅଣ୍ଟା ସଳଖି,
ଏତେବେଳେ ତାଳ ପଡ଼େ ତା ମୁଣ୍ଡରେ
ଫାଟି ଯାଇ ଉଠେ ବିଳପି ।
ହତଭାଗ୍ୟ ଅଟେ ଯେ ଜନ
ରକ୍ଷା ପାଇବାକୁ ଯେତେ ବାଟ ଖୋଜେ
ଦଇବ ହୁଅଇ ଦାରୁଣ ।

ଶଶି ଦିବାକରୟୋ ର୍ଗ୍ରହ ପୀଡନଂ
ଗଜଭୁଜଙ୍ଗମୟୋରପି ବନ୍ଧନଂ ।
ମତି ମତାଞ୍ଚ ବିଲୋକ୍ୟ ଦରିଦ୍ରତାଂ
ବିଧିରହୋ ବଳବାନିତି ମେ ମତିଃ । ୮୭ ।

ରବି ଶଶୀ ଭୋଗିଥାନ୍ତି ଗ୍ରହର ପୀଡନ
ଦୈବ ଯୋଗୁ ଲଭେ ଗଜ ଭୁଜଙ୍ଗ ବନ୍ଧନ,
ପାଣ୍ଡିତ୍ୟ ଲଭଇ ନର ଦୈବୀ ଶକ୍ତି ପାଇ
ସେ କୃପା ବିହୁନେ ବ୍ୟକ୍ତି ଦାରିଦ୍ର୍ୟ ଭୋଗଇ ।
ଦୈବୀ ବଳଠାରୁ ବଳ ନାହିଁ ଏହି ଭବେ
ନିୟନ୍ତ୍ରିତ ହୁଏ ବିଶ୍ୱ, ସେ ଶକ୍ତି ପ୍ରଭାବେ ।

ଦେବେନ ପ୍ରଭୁଣା ସ୍ୱୟଂ ଜଗତି ଯଦ୍‌ଯସ୍ୟ ପ୍ରମାଣୀକୃତଂ
ତତ୍ତସ୍ୟୋପନ ମେନ୍ମନାଗପି ମହାନୈବାଶ୍ରୟଃ କାରଣଂ ।
ସର୍ବାଶାପରିପୂରକେ ଜଳଧରେ ବର୍ଷତ୍ୟପି ପ୍ରତ୍ୟହଂ
ସୂକ୍ଷ୍ମାଏବ ପତନ୍ତି ଚାତକ ମୁଖେ ଦ୍ୱିତ୍ରାଃ ପୟୋ ବିନ୍ଦବଃ । ୮୮ ।

ଯାହାକୁ ଯାହାଫଳ
ଦିଅଇ ଦୈବୀ ବଳ
ଅନ୍ୟଥା ପାରେ ନାହିଁ କେ କରି,
ମହଦାଶ୍ରୟ କେବେ
ବିଫଳ ନୁହେଁ ଲବେ
ଲଭନ୍ତି ଯାହା ପ୍ରାପ୍ୟ ଯେପରି ।

ଆସେ ବାରିଦ ମାଳା
ବରଷେ ବିଶ୍ୱ ସାରା
ଜୀବନ ଦାନ କରେ ଜୀବରେ,
ଦେଖି ଚାତକ ବନ୍ଧୁ
ଢ଼ାଳନ୍ତି ବାରି ବିନ୍ଦୁ
ତୃଷାର୍ତ୍ତ ହୁଏ ଶାନ୍ତ ମହିରେ ।

ସୃଜତି ତାବଦଶେଷଗୁଣାକରଂ
ପୁରୁଷରତ୍ନମଳଂକରଣଂ ଭୁବଃ ।
ତଦପିତତ୍‌କ୍ଷଣଭଙ୍ଗି କରୋତି ଚେ -
ଦହହ କଷ୍ଟମପିଣ୍ଡତା ବିଧେଃ । ୮୯ ।

ସକଳ ସାଧୁଗୁଣେ ମଣ୍ଡନ କରି
ସଜ୍ଜନ ପୁରୁଷଙ୍କୁ କୋଳରେ ଧରି,
ହୁଅଇ ଅଳଙ୍କୃତ ଏ ଧରାଧାମ
ପୁଣି କରେ କିପରି ତାଙ୍କୁ ନିଧନ !
ଅଟେ ଏ ! ବିଧାତାର ବିଚିତ୍ର ଗତି
ଅବୋଧ ଅଟେ ତାଙ୍କ ରୀତି ଓ ନୀତି ।

ଅୟମମୃତନିଧାନଂ ନାୟକୋଽପ୍ୟୋଷଧୀନାଂ
ଶତଭିଷଗନୁଯାତଃ ଶମ୍ଭୁମୂର୍ଦ୍ଧ୍ନୋଽବତଂସଃ ।
ବିରହୟତି ନ ଚୈନଂ ରାଜଯକ୍ଷ୍ମା ଶଶାଙ୍କ
ହତବିଧି ପରିପାକଃ କେନ ବା ଲଙ୍ଘନୀୟଃ । ୯୦ ।

ସର୍ବ ଔଷଧ ପତି ଅଟନ୍ତି ଚନ୍ଦ୍ର
ସେ ବି ଅଟନ୍ତି ଏକ ସୁଧା ସମୁଦ୍ର,
ଶିବଙ୍କ ଶିର କରି ମଣ୍ଡନ ପୁଣି
କ୍ଷୟ ରୋଗେ ଆକ୍ରାନ୍ତ ସେ ନିଶାମଣି
ଏ' କି ବିଧି ବିଧାନ,
କେ' ଅଛି ଏ ସଂସାରେ କରିବ ଆନ !

ପ୍ରିୟସଖ ବିପଦ୍ଦଣ୍ଡାଘାତ ପ୍ରବାତ ପରମ୍ପରା
ପରିଚୟବଳେ ଚିନ୍ତାଚକ୍ରେ ବିଧାୟ ବିଧିଃ ଖଳଃ ।
ମୃଦମିବ ବଳାତ୍ପିଣ୍ଡୀକୃତ୍ୟ ପ୍ରଗଲ୍ଭକୁଲାଳବ -
ଭ୍ରମୟତି ମନୋ ନୋ ଜନୀର୍ମଃ କିମତ୍ର ବିଧାସ୍ୟତି ।୯୧ ।

ବିପଦ ଦଣ୍ଡାଘାତେ ମନ ମାଟି ଚକଟେ
ସବୁଶକତି କରି ଠୁଳ,
ବିଧାତା ଚିନ୍ତାଚକ୍ରେ ଘୂରାଏ ତାକୁ ବକ୍ରେ
ସତେବା କୁମ୍ଭକାର ତୁଲ;
କିଏ ବା ଜାଣିବତା' ମନ
କେ କରି ପାରେ ଆକଳନ !

ପତ୍ରଂ ନୈବ ଯଦା କରିରୋବିଟପୋ ଦୋଷୋ ବସନ୍ତସ୍ୟ କିଂ
ନୋଽଲୁକୋଽପ୍ୟବଲୋକତେ ଯଦି ଦିବାସୂର୍ଯ୍ୟସ୍ୟକିଂ ଦୂଷଣ ।
ଧାରାନୈବ ପତନ୍ତି ଚାତକ ମୁଖେ ମେଘସ୍ୟ କିଂ ଦୂଷଣଂ
ଯଜ୍ ପୂର୍ବଂ ବିଧିନା ଲଲାଟ ଲିଖିତଂ ତନ୍ମାର୍ଜିତୁଂ କଃ କ୍ଷମ ।୯୨ ।

ବାଉଁଶ ହେବ ଯଦି ପତ୍ରବିହୀନ
ବସନ୍ତେ ନିନ୍ଦିବାର ନାହିଁ କାରଣ,
ଦିବସେ ପେଚା ଯଦି ନପାରେ ଦେଖି
ଜଗତ ନୟନ କି ତା' ପାଇଁ ଦୋଷୀ !

ଚାତକ ମୁଖେ ଯଦି ନ ପଡେ ଜଳ
କି ଦୋଷ ବାରିଦର ନିନ୍ଦି କି ଫଳ ।
ଲେଖି ଅଛନ୍ତି ବିହି ଲଲାଟେ ଯାହା
ସମସ୍ତେ ଜୀବନରେ ଭୋଗନ୍ତି ତାହା ।

ବିଧି ଲିଖନ ଲଘି ପାରିବ କିଏ !
ଜୀବର ଅନ୍ତରଙ୍ଗ ସେ ସାଥିଟିଏ ।

•

# କର୍ମ ପ୍ରକରଣ

ନମସ୍ୟାମୋ ଦେବାନ୍ନନୁ ହତବିଧେସ୍ତେଽପି ବଶଗା
ବିଧିର୍ବନ୍ଦ୍ୟଃ ସୋଽପି ପ୍ରତିନିୟତ କର୍ମୈ କ ଫଳଦଃ ।
ଫଳଂ କର୍ମାୟତ୍ତଂ କିମ ମରଗଣୈଃ କିଂଚ ବିଧିନା
ନମସ୍ତତ୍ କର୍ମଭ୍ୟୋ ବିଧିରପି ନ ଯେଭ୍ୟଃ ପ୍ରଭବତି ।୯୩ ।

ଭୋଗନ୍ତି ମଣିଷ ଯଦି କର୍ମଫଳ
ଦେବତାଙ୍କୁ ପୂଜି କି କାମ
ଏହା ଯଦି ଅଟେ ବିଧିର ବିଧାନ
ତେଣୁ ପୂଜ୍ୟ ସଦା 'କରମ' ।
ଦେବ ପୂଜି କିସ ପ୍ରାପତ,
କର୍ମର ଅଧୀନ ଯଦି ଫଳ ଲାଭ
କର୍ମକୁ ପୂଜିବା ବିହିତ ।

ବ୍ରହ୍ମାଯେନ କୁଲାଲବନ୍ନିୟୋମିତ ବ୍ରହ୍ମାଣ୍ଡଭାଣ୍ଡୋଦରେ
ବିଷ୍ଣୁର୍ଯେନ ଦଶାବତାର ଗହନେ କ୍ଷିପ୍ତୋ ମହାସଙ୍କଟେ ।
ରୁଦ୍ରୋଯେନ କପାଳପାଣିପୁଟକେଭିକ୍ଷାଟନଂ ସେବତେ
ସୂର୍ଯ୍ୟୋ ଭ୍ରମତି ନିତ୍ୟମେବ ଗଗନେ ତସୈ ନମଃ କର୍ମଣେ । ୯୪ ।

ସର୍ଜନାରେ ସଦାରତ ବ୍ରହ୍ମାଣ୍ଡ କରତା
କର୍ମବଳେ କର୍ମେରତ ସଦା ଆଦି ପିତା,
ପାଳନ କରତା ବିଷ୍ଣୁ ଅଟନ୍ତି ବିଶ୍ୱର
କର୍ମବଳେ ରଚିଥିଲେ ଦଶ ଅବତାର ।
ଗଳାରେ ଲମ୍ବାଇ ନର ଖପୁରୀର ମାଳା
ରୁଦ୍ର ଦେବେ ଧରାଇଛି ଭିକ୍ଷାର ପସରା

କର୍ମବଳେ ସୂର୍ଯ୍ୟଦେବ ଘୂରୁଛନ୍ତି ନିତି
ନାହିଁ ଏ' ସଂସାରେ କେବେ କର୍ମର ବିରତି
କର୍ମ ପଦେ କରୁଛି ପ୍ରଣାମ,
କର୍ମ ଅଟେ ସର୍ବ ପୂଜ୍ୟ ସବୁର କାରଣ ।

ଯା ସାଧୂଂଶ୍ଚ ଖଲାନ୍ କରୋତି ବିଦୁଷୋ ମୂର୍ଖାନ୍ ହିତାଦ୍ୱେଷିଣଃ
ପ୍ରତ୍ୟକ୍ଷଂ କୁରୁତେ ପରୋକ୍ଷମମୃତଂ ହାଲାହଲଂ ତତ୍କ୍ଷଣାତ୍ ।
ତାମାରାଧୟ ସତ୍କ୍ରିୟାଂ ଭଗବତୀଂ ଭୋକ୍ତୁଂ ଫଳଂ ବାଞ୍ଛିତଂ
ହେ ସାଧୋ ବ୍ୟସନୈର୍ଗୁଣେଷ୍ଟୁ ବିପୁଳେଷ୍ୱାସ୍ଥାଂ ବୃଥା ମା କୃଥା । ୯୫ ।

କରିଥାନ୍ତି ସାଧୁ, ଅସାଧୁକୁ ସାଧୁ
ମୂର୍ଖକୁ ପଣ୍ଡିତ ଜନ,
ବିଷକୁ କରନ୍ତି ପ୍ରତ୍ୟକ୍ଷେ ଅମୃତ
ଚାହିଁଲା ମାତ୍ରେ ତତ୍କ୍ଷଣ ।
ସତ୍କର୍ମକୁ କରି ଶ୍ରେୟ
ମନୋରଥ ସେତ ପୂରଣ କରନ୍ତି
ସତ୍ପଥ କରି ଆଶ୍ରୟ ।

ସତ୍କର୍ମ ଯେ କରେ ଅନ୍ୟ କର୍ମ କିଛି
ନାହିଁ ତା'ର ପ୍ରୟୋଜନ,
ତେଣୁ ବିଜ୍ଞ ବ୍ୟକ୍ତି ସତ୍କର୍ମରେ ସଦା
ରଖିଥାନ୍ତି ତାଙ୍କ ମନ ।
ସତ୍ପଥ ଆଶ୍ରୟ କର,
ସର୍ବ ଦୁଃଖ ହେବ ଦୂର ।।

ଶୁଭ୍ରଂ ସଦ୍ମ ସବିଭ୍ରମା ଯୁବତୟଃ ଶ୍ୱେତାତପତ୍ରୋଜ୍ଜ୍ୱଳା
ଲକ୍ଷ୍ମୀରିତ୍ୟନୁଭୂୟତେ ଚିରମନୁସ୍ୟୂତେ ଶୁଭେ କର୍ମଣି ।
ବିଚ୍ଛିନ୍ନେ ନିରାମନଙ୍ଗ କଳହ କ୍ରୀଡାତ୍ରୁଟତନ୍ତୁକଂ
ମୁକ୍ତାଜାଲମିବ ପ୍ରୟାତି ଝଟିତ ଭ୍ରଶ୍ୟଦ୍ଦିଶୋ ଦୃଶ୍ୟତାଂ । ୯୬ ।

ଯା'ର ଥାଏ ପୂର୍ବ ଜନ୍ମ ସୁକୃତି
ନଭଶ୍ଚୁମ୍ବି ରମ୍ୟ ହର୍ମ୍ୟ ପ୍ରାପତି-
ହୁଅଇ ତାକୁ,
ଶୁଭ ଲକ୍ଷ୍ମୀ ତା'ର ସଦା ଅନୁକୂଳ
ଜୀବନକୁ ସୁଖେ ବିତାଇ ବାକୁ ।

ଶୃଙ୍ଗାର ଶାଳିନୀ ରମ୍ୟା ରମଣୀ
ଶୁଭ କର୍ମ ଫଳେ ଲଭଇ ପୁଣି,
ଯେ କର୍ମହୀନ
ଛିନ୍ନ ସୂତ୍ର ମୁକ୍ତା ପରି ଜୀବନ
ନୁହେ ଶୋଭାମୟ ନୁହେ ଶୋଭନ ।

ଗୁଣବଦ ଗୁଣବଦ୍ ବା କୁର୍ବତା କାର୍ଯ୍ୟଜାତଂ
ପରିଣତି ରଚଧାର୍ଯ୍ୟା ଯତ୍ନତଃ ପଣ୍ଡିତେନ ।
ଅତି ରଭସକୃତାନାଂ କର୍ମଣା ମ ବିପତ୍ତେ -
ର୍ଭବତି ହୃଦୟଦାହୀ ଶଲ୍ୟତୁଲ୍ୟୋ ବିପାକଃ । ୯୭ ।

ସୁଗୁଣ ସମ୍ପନ୍ନ କର୍ମ ଅଥବା ଦୁର୍ଷ୍କମ -
କରନ୍ତି ପଣ୍ଡିତଗଣ ସଜାଗେ ସମ୍ପନ୍ନ,
କର୍ମ ବାମ ହେଲେ ଫଳ ହୁଏ ପ୍ରତିକୂଳ
ସେଥିପାଇଁ ସାବଧାନ ହୁଅନ୍ତି ସକଳ ।
କର୍ମ ଆଚରଣେ ସଦା ନହେଲେ ସତର୍କ
ଭୋଗିବାକୁ ପଡ଼ିଥାଏ ସନ୍ତାପ ଅମାପ,
କରିଥାଏ ତାହା, ବ୍ୟକ୍ତି ହୃଦୟ ଦହନ
ଶଲ୍ୟତୁଲ୍ୟ ମର୍ମଦାହି ଦୁଃଖ ଆନୟନ ।

ସ୍ଥାଲ୍ୟାଂ ବୈଡୂର୍ଯ୍ୟମୟ୍ୟାଂ ପଚତି ତିଳଖଳଂ ଚନ୍ଦନୈରିନ୍ଧନୋଘୈଃ
ସୌବର୍ଣ୍ଣୈ ର୍ଲାଙ୍ଗଳାଗ୍ରୈର୍ବିଲିଖତି ବସୁଧାମର୍କତୂଳସ୍ୟହେତୋଃ ।
ଛିତ୍ୱା କର୍ପୂର ଖଣ୍ଡାନ୍ ବୃତିମିହ କୁରୁତେ କୋଦ୍ରବାଣାଂ ସମନ୍ତାତ୍
ପ୍ରାପ୍ୟେମାଂ କର୍ମଭୂମିଂ ନ ଭଜତି ମନୁଜୋ ଯସ୍ତପୋମନ୍ଦଭାଗ୍ୟଃ । ୯୮ ।

ବାସ ଚନ୍ଦନକୁ କରି ଇନ୍ଧନ
ରତନ ପାତ୍ରରେ କରେ ରନ୍ଧନ -
ସେ ତିଳ ପିଣ୍ଡ,
କେଡ଼େ ଅବିବେକୀ ମୂରୁଖଗଣ୍ଡ ।

ସୁବର୍ଣ୍ଣ ନିର୍ମିତ ଲଙ୍ଗଳେ ଭଲା
ଚାଷ କରିଥାଏ ଅରଖ ତୂଳା
କର୍ପୂର ଚୂର୍ଣ୍ଣ,
ଛିଞ୍ଚି ଥାଏ ଚଷି କୋଦୁଅ ଧାନ ।

ଏ ଜୀବନେ ଲଭି କରମ ଭୂମି
ଧର୍ମ କର୍ମ ତପ ନକରେ ପୁଣି,
କେଡ଼େ ଅଧମ
ନର ଜନ୍ମ ପାଇ କି ଲାଭ ପୁଣ ।

ନୈବାକୃତିଃ ଫଳତି ନୈବ କୁଳଂ ନ ଶୀଳଂ
ବିଦ୍ୟାପି ନୈବ ନ ଚ ଯତ୍ନକୃତାପି ସେବା ।
ଭାଗ୍ୟାନି ପୂର୍ବ ତପସା ଖଳୁ ସଞ୍ଚିତାନି
କାଳେ ଫଳନ୍ତି ପୁରୁଷସ୍ୟ ଯଥୈବ ବୃକ୍ଷା । ୯୯ ।

ଯେତେ ଯା' ସୌନ୍ଦର୍ଯ୍ୟଶିରୀ
ଉଚ୍ଚ କୁଳ ଶୀଳାଚାରୀ
ସୌଭାଗ୍ୟ ନଥିଲେ ସବୁ ହୁଅଇ ବାମ,
ପୂର୍ବଜନ୍ମ କର୍ମଫଳ
ସୌଭାଗ୍ୟ କୃତି ସକଳ
ଫଳ ପ୍ରଦାୟକ ସଦା ପାଦପ ସମ ।

ଯେତେ ବିଦ୍ୟା ଥିଲେ ଅବା
କଲେ ମଧ୍ୟ ଯେତେ ସେବା,
ହୁଏ ନାହିଁ ଫଳପ୍ରସୂ ସୌଭାଗ୍ୟ ବିନା,
ପୂର୍ବ ଜନ୍ମାର୍ଜିତ ଫଳ
ପ୍ରାପତ ହୁଏ ସକଳ
ବିଧିର ବିଧାନ ଏହା ଭାଗ୍ୟରେ ଗଣା ।
ସବୁଠାରେ ଭାଗ୍ୟ ପ୍ରବଳ
ମଣିଷ ଭୋଗଇ ସଦା ଭାଗ୍ୟର ଫଳ ।

**ମଜ୍ଜତ୍ୱମ୍ଭସି ଯାତୁ ମେରୁଶିଖରଂ ଶତ୍ରୁଞ୍ଜୟତ୍ୱାହବେ**
**ବାଣିଜ୍ୟ କୃଷିସେବନାଦି ସକଳା ବିଦ୍ୟାଃ କଳାଃ ଶିକ୍ଷତୁ ।**
**ଆକାଶଂ ବିପୁଳଂ ପ୍ରୟାତୁ ଖଗବତ୍ କୃତ୍ୱା ପ୍ରଯତ୍ନଂ ପରଂ**
**ନା ଭାବ୍ୟଂ ଭବତୀହ କର୍ମବଶତୋ ଭାବ୍ୟସ୍ୟ ନାଶଃ କୃତଃ ।୧୦୦ ।**

ଜଳରେ ମଗ୍ନ ମେରୁ ଶିଖରେ ବାସ
କରବା ଶକ୍ତିବଳେ ଶତ୍ରୁ ବିନାଶ,
ହୁଅ ଅବା ସକଳ କଳା ନିପୁଣ
କୃଷି, ବାଣିଜ୍ୟ ଆଦି ବିଦ୍ୟାନିପୁଣ
ହୋଇଲେ ଯେତେ,
ଉଡ଼ିଲେ ପକ୍ଷୀସମ ବିତାନେ ବାତେ ।

କର୍ମେ ନଥାଏ ଯାହା ଘଟେନି କେବେ
ଅଲଙ୍ଘ୍ୟ କର୍ମଫଳ ଅଟଇ ଭବେ ।

**ବନେ ରଣେ ଶତ୍ରୁ ଜଳାଗ୍ନି ମଧ୍ୟେ**
**ମହାର୍ଣ୍ଣବେ ପର୍ବତ ମସ୍ତକେ ବା' ।**
**ସୁପ୍ତଂ ପ୍ରମତ୍ତଂ ବିଷମସ୍ଥିତଂ ବା**
**ରକ୍ଷନ୍ତି ପୁଣ୍ୟାନି ପୁରାକୃତାନି ।୧୦୧ ।**

ନିବିଡ ଅରଣ୍ୟେ ଅଥବା ରଣେ
ଶତ୍ରୁର କବଳେ ଅଗ୍ନି ଦହନେ,
ଜଳେ ମହାର୍ଣ୍ଣବେ ପର୍ବତ ଶିଖେ
ସୁପ୍ତ ପ୍ରମତ୍ତ ବା ବିଷମ ଦୁଃଖେ ।
ପୂର୍ବ ପୁଣ୍ୟବଳ ପୂର୍ବ ସୁକୃତି
ରକ୍ଷାକରେ ନରେ ବିଷମ ସ୍ଥିତି
ଏ ପୁଣ୍ୟ ଫଳ,
ହୁଏ ନାହିଁ ଏହା କେବେ ବିଫଳ ।

**ଭୀମଂ ବନଂ ଭବତି ତସ୍ୟ ପୁରଂ ପ୍ରଧାନଂ**
**ସର୍ବୋଜନଃ ସ୍ୱଜନତାମୁପଯାତି ତସ୍ୟ**
**କୃସ୍ନାଚ ଭୂର୍ଭବତି ସନ୍ନିଧିରତ୍ନ ପୂର୍ଣ୍ଣା**
**ଯସ୍ୟାସ୍ତି ପୂର୍ବସୁକୃତଂ ବିପୁଳଂ ନରସ୍ୟ । ୧୦୨ ।**

ପ୍ରାକ୍ତନ ଶୁଭଫଳ ଲଭିଛି ଯେହୁ
ପୁଣ୍ୟାଲୋକେ ଲୋକିତ ଅଟଇ ସେହୁ ।
ପାଲଟେ ଘନ ବନ ଶ୍ରେଷ୍ଠ ନଗର
ହୁଅନ୍ତି ସର୍ବେ ତା'ର ଯଥା କିଙ୍କର ।
ଶସ୍ୟ ଶ୍ୟାମଳ ସସାଗରା ଏ ଧରା
କରେ ସେ କବଳିତ ଶକ୍ତିରେ ପରା ।
ଲଭଇ ଜଗତେ ସେ ବିପୁଳ ଖ୍ୟାତି
ପୂର୍ବାର୍ଜ୍ଜିତ କର୍ମରୁ ହୁଅଇ ପ୍ରାପ୍ତି ।

•

ନୀତି ଶତକ ସମାପ୍ତ

# ସ୍ତ୍ରୀ ପ୍ରଶଂସା

ଶମ୍ଭୁ ସ୍ୱୟମ୍ଭୁ ହରୟୋ ହରିଣେକ୍ଷଣାନାଂ
ଯେନା କ୍ରିୟନ୍ତ ସତତଂ ଗୃହକର୍ମଦାସାଃ ।
ବାଚାମଗୋଚରର ଚରିତ୍ର ବିଚିତ୍ରିତାୟ
ତସ୍ମୈ ନମୋ ଭଗବତେ କୁସୁମାୟୁଧାୟ । ୧ ।

ହେ ଶମ୍ଭୁ ସ୍ୱୟମ୍ଭୁ ପ୍ରଭୁ ତ୍ରିପୁରାରି
ଥିଲ ଦେବୀଙ୍କର ଦାସ,
ଗୃହ କର୍ମ ଧର୍ମ ପାଳନେ ତୁମର
ଥିଲା ଅଦମ୍ୟ ପ୍ରୟାସ ।
ମଦନ ମୋହିତ ମନ ମାନିଥିଲା
କୁରଙ୍ଗୀ ନୟନା ବାଣୀ,
ହେ ପ୍ରଭୁ ମଦନ ! ସର୍ବ ମନ ଜିଣ
କୁସୁମ ଆୟୁଧ ଘେନି ।
ପଶୁଛି ପଦେ ଶରଣ
ଦିଅ ପ୍ରଭୁ ଶକ୍ତି ଭଣିବି ଏ ଗ୍ରନ୍ଥ
ରସାଳ ପଦେ ବର୍ଣ୍ଣନ ।

ସ୍ମିତେନ ଭାବେନ ଚ ଲଜ୍ଜୟାଭିୟା
ପରାଙ୍ମୁଖୈରର୍ଦ୍ଧ କଟାକ୍ଷ ବୀକ୍ଷଣୈଃ ।
ବଚୋଭିରୀର୍ଷ୍ୟା କଲହେନ ଲୀଳୟା
ସମସ୍ତଭାବୈଃ ଖଲୁ ବନ୍ଧନଂ ସ୍ତ୍ରିୟଃ ।୨ ।

ପ୍ରୀତି ପଦ୍ମିନୀର ମନ୍ଦ ମନ୍ଦ ହସ
ନମିତ ନୟନ ଠାଣି,
ଚଟୁଳ ବଚନ ସ୍ନିଗ୍ଧ ଅପଘନ
ହୃଦୟକୁ ନିଏ କିଣି ।
ଈର୍ଷା ରୋଷ ଦ୍ୱେଷ ଲଳିତ ବିଳାସ
ସୁରତ ବନ୍ଧନପାଶେ,
ବନ୍ଦି କରିଥାଏ ପୁରୁଷର ମନ
ଭାବସ୍ନିଗ୍ଧ ପରିତୋଷେ ।

ଭ୍ରୂ ଚାତୁର୍ଯ୍ୟାତ୍ କୁଞ୍ଚିତାକ୍ଷାଃ କଟାକ୍ଷାଃ
ସ୍ନିଗ୍ଧା ବାଚେ ଲଜ୍ଜିତାନ୍ତାଶ୍ଚ ହାସାଃ ।
ଲୀଳା ମନ୍ଦଂ ପ୍ରସ୍ଥିତଂ ଚ ସ୍ଥିତଂ ଚ
ସ୍ତ୍ରୀଣା ମେତଦ୍ ଭୂଷଣଂ ଚାୟୁଧଂ ଚ । ୩ ।

ସେ'ତ ରୂପମୟୀ ରୂପସୀ ନାରୀ
ଭୀରୁ ଭ୍ରୂରୁ ନମ୍ର ନୟନ ଚାଳି,
କୁଞ୍ଚିତ କଟାକ୍ଷେ କରଇ ବଶ
ମନ୍ଦ ମନ୍ଦ ତା'ର ମୃଦୁଳ ହସ ।

ସ୍ନିଗ୍ଧ ସୁକୋମଳ ବଚନ ସୁଧା
ଲଜ୍ଜା ପାଟଳିମା ବଦନ ବିଭା,
ମରାଳ ନିନ୍ଦି ତା' ଚରଣ ଲୀଳା
ମନ୍ଦ ମନ୍ଦ ଛନ୍ଦାୟିତ, ସୁଶୀଳା ।
ନାରୀର ଭୂଷଣ ଅଟଇ ଏହା
ପୁରୁଷ ହୃଦୟ ଜୟ କରିବାକୁ ଆୟୁଧ ତାହା ।

କ୍ୱଚିତ୍ସଭ୍ରୂଭଙ୍ଗୈଃ କ୍ୱଚିଦପିଚ ଲଜ୍ଜାପରିଗତୈଃ
କ୍ୱଚିଦ୍ଭୂରିତ୍ରସ୍ତୈଃ କ୍ୱଚିଦପି ଚ ଲୀଳାବିଳସିତୈଃ ।
କୁମାରୀଣାମେତୈ ମଦନ ସୁଭଗୈ ର୍ନେତ୍ର ଚଳିତୈଃ
ସ୍ଫୁର ନ୍ନୀଳାବ୍‌ଜାନାଂ ପ୍ରକର ପରିକୀର୍ଣ୍ଣା ଇବ ଦୃଶଃ । ୪ ।

ଭ୍ରୂଭଙ୍ଗି କେବେ ତା'ର ଦିଶଇ ମନୋହର
କେବେ ବା ଲଜ୍ଜା ନମ୍ର ନୟନ,
ସନ୍ତ୍ରମଶୀଳା ସେ'ତ, ଭୟରେ ଶିହରିତ
ଲୀଳା ବିଳାସେ କେବେ ମଗନ ।

ନବୋଢ଼ା ରମଣୀର ଏଣୀ ନୟନ ବାଣ
ଭେଦିଲେ ଦିଗବଧୂ ମଣ୍ଡଳ,
ବେନି ନୟନ ଦିଶେ, ନୀଳ ଉତ୍ପଳ କି' ସେ
ଫୁଟିଛି ହୋଇ ପ୍ରୀତି ବିହ୍ୱଳ ।

ବକ୍ତ୍ରଂ ଚନ୍ଦ୍ରବିକାସି ପଙ୍କଜ ପରୀହାସକ୍ଷମେ ଲୋଚନେ
ବର୍ଣ୍ଣଃ ସ୍ୱର୍ଣ୍ଣମପାକରିଷ୍ଣୁ ରଳିନୀଜିଷ୍ଣୁଃ କଚାନାଂ ଚୟଃ ।
ବକ୍ଷୋଜା ବିଭକୁମ୍ଭ ବିଭ୍ରମହରୌ ଗୁର୍ବୀ ନିତମ୍ବସ୍ଥଳୀ
ବାଚାଂ ହାରିଚ ମାର୍ଦବଂ ଯୁବତିଷୁ ସ୍ୱାଭାବିକଂ ମଣ୍ଡନଂ । ୫ ।

ନୟନେ ନୟନ ରହଇ ଲାଖି
ସେ ନବ ଯୁବତୀ ଚନ୍ଦ୍ରମୁଖୀ -
ସେ ଚନ୍ଦ୍ରମୁଖୀ ।
ସ୍ୱର୍ଣ୍ଣିମ ତା'ର ଶରୀର କାନ୍ତି
ପଦ୍ମିନୀ ଜିଣା ନୟନ ଶୋଭା,
ଅଳି କୃଷ୍ଣିମା କେଶପାଶ ତା'ର
ବକ୍ଷୋଜ ବେନି କି ମନଲୋଭା !

କରୀ କୁମ୍ଭଜିଣା, ଅଟଇ ପୀନ;
ବିପୁଳ ବୁକୁର ନବ ଯୌବନ ।
ସୁଧା ସିଞ୍ଚିତ ବଚନ ତାହାର
ନିତମ୍ବ ବେନି ପୃଥୁଳ ଭାର,
ମନ୍ଦ ମନ୍ଦ, ଗତି ବିନୋଦିନୀ
ରସାଙ୍କିତ ଏକ ସୁଧାର ଧାର ।
ରମଣୀ ରାଣୀ,
ତା' ବପୁ ବିଭବେ ଅଟଇ ଧନୀ ସେ
ଅଟଇ ଧନୀ ।

**ସ୍ମିତଂ କିଞ୍ଚିନ୍ମୁଗ୍ଧଂ ସରଳ ତରଳୋ ଦୃଷ୍ଟିବିଭବଃ**
**ପରିସ୍ପନ୍ଦୋବାଚା ମଭିନବ ବିଳାସୋକ୍ତି ସରସଃ ।**
**ଗତାନାମାରମ୍ଭଃ କିସଳୟିତ ଲୀଳା ପରିକରଃ**
**ସ୍ପୃଶନ୍ତ୍ୟା ସ୍ତାରୁଣ୍ୟ କିମିହ ନହିରମ୍ୟଂ ମୃଗଦୃଶଃ । ୬ ।**

ନବ ଯୁବତୀ ସେ ନବ ଯୁବତୀ
ରସଘନ ତା'ର ରମ୍ୟ ମୂରତି,
ସ୍ମିତ ହାସ ଲୋଳେ ଅଧର ଧାରେ
ସରଳ ତରଳ କଟାକ୍ଷ ଢ଼ାଳେ ସେ
କଟାକ୍ଷ ଢ଼ାଳେ,
ରସ ପୀରତି
ନବଯୁବତୀ ସେ ନବଯୁବତୀ ।

ପଲ୍ଲବ ମେଦୁର ଚାରୁ ଚରଣ
ମନ୍ଦାୟିତ ଗତି କି ମନୋରମ,
ହସ ବିଳାସିନୀ ବଚନ ସୁଧା
ପ୍ରୀତି ପ୍ରତୁଳିତ ପୀରତି କ୍ଷୁଧା,
ଏ'କି ଅଭିନବ ବେଭାର !
ତାରୁଣ୍ୟ ପରଶେ ମୃଗନୟନାର
ଏ କି ଯଉବନ ସମ୍ଭାର !!

ଦ୍ରଷ୍ଟବ୍ୟେଷୁ କିମୁତ୍ତମଂ ମୃଗଦୃଶଃ ପ୍ରେମପ୍ରସନ୍ନଂ ମୁଖଂ
ଘ୍ରାତବ୍ୟେଷ୍ୱପି କିଂ ତଦାସ୍ୟପବନଃ ଶ୍ରାବ୍ୟେଷୁ କିଂ ତଦ୍‌ବଚଃ
କିଂ ସ୍ୱାଦ୍ୟେଷୁ ତଦୋଷ୍ଟପଲ୍ଲବ ରସଃ ସ୍ପୃଶ୍ୟେଷୁ କିଂ ତଦ୍‌ବପୁଂ
ଧ୍ୟେୟଂ କିଂ ନବଯୌବନଂ ସହୃଦୟୈଃ ସର୍ବତ୍ର ତଦ୍‌ବିଭ୍ରମଃ ।୭ ।

ସେ ମୃଗନୟନା ବିଲୋଳ ବରଣା
ପ୍ରେମ ପ୍ରସନ୍ନିତ ମୁଖ,
ଅଟେ ଦର୍ଶନୀୟ, ତା' ମୁଖ ସୁବାସ
ସେବନେ ସୌଭାଗ୍ୟ ସୁଖ ।

ତା' ଲାସ୍ୟ ଲୋହିତ, ବଚନ ଅମୃତ
ଶ୍ରବଣେ ମିଳଇ ଶାନ୍ତି,
ଅଟେ ସେବନୀୟ ତା' ଅଧର ସୁଧା
ପରଶ ପାଗଳ କାନ୍ତି ।

ଯୁବତୀ ଯୌବନ କରେ ଆକର୍ଷଣ
ଯୁବ ଜନ ମନ ପ୍ରାଣ,
ସେ ଭ୍ରମ ଭଉଁରି ସୃଷ୍ଟି କରିଥାଏ
ଏ ଜଗତ ଆନମନ ।

ଏତା ଷ୍ଖଳଦ ବଳୟ ସଂହତି ମେଖଳୋତ୍ଥ
ଝଂକାର ନୂପୁର ପରାଜିତ ରାଜହଂସ୍ୟଃ ।
କୁର୍ବନ୍ତି କସ୍ୟ ନ ମନୋବିବଶଂ ତରୁଣ୍ୟୋ -
ବିତ୍ରସ୍ତ ମୁଗ୍ଧହରିଣୀ ସଦୃଶୈଃ କଟାକ୍ଷୈଃ । ୮ ।

ମଣି କାଞ୍ଚନରେ ହୋଇ ମଣ୍ଡିତ
ରସିକା ରମଣୀ ପ୍ରୀତି ପ୍ଲାବିତ,
ଏଣୀ ଭୀରୁ ଭୃରୁ କଟାକ୍ଷ ଚାଳି
ବଳୟ ନୂପୁର ନିକ୍ୱଣ ତୋଳି -
ସତେ ରାଜହଂସ ଧ୍ୱନି,

ଉଛୁଳି ଉଠୁଛି ଲାବଣ୍ୟମୟୀର
ତରୁଣିମା ସୁରଧୁନୀ ।
ତା'ରୂପ ହାଟରେ
କିଏ ବା' ନହେବ ବଣା ।
ଶୃଙ୍ଗାର ପାଗଳ
ମାନିବକି କା'ର ମନା ?

କୁଙ୍କୁମପଙ୍କ କଳଙ୍କିତ ଦେହା
ଗୌର ପୟୋଧର କମ୍ପିତ ହାରା ।
ନୂପୁର ହଂସ ରଣତ୍ପଦ ପଦ୍ମା
କଂ ନ ବଶୀ କୁରୁତେ ଭୁବି ରାମା । ୯ ।

ଅଙ୍ଗନାର ଅଙ୍ଗ କୁଙ୍କୁମ ଲେପିତ
ଗୌର ପୟୋଧର ତନୁ,
ଗଳା ରତ୍ନହାର ହୁଏ ପ୍ରକମ୍ପିତ
ବକ୍ଷୋଜର ବିମର୍ଦ୍ଦନୁ ।

ହଂସକ ଶୋଭିତ ପଙ୍କଜ ପଦ
ନୂପୁର ନିକ୍ୱଣ ଧାରା
କାହାର ହୃଦୟେ ନ ଢ଼ାଳେ ଅମୃତ
ଶୃଙ୍ଗାର ରସ ଝରା,
ଧନ୍ୟ ରମଣୀ ରାଣୀ
ଶତ ନୟନର ପ୍ରୀତି ପ୍ରମୁଦିତ ମଣି ।

ନୂନଂ ହି ତେ କବିବରା ବିପରୀତ ବୋଧା
ଯେ ନିତ୍ୟ ମାହୁର ବଳା ଇତି କାମିନୀସ୍ତାଃ ।
ଯାଭିର୍ବିଲୋଳ ତର ତାରକ ଦୃଷ୍ଟିପାତୈଃ
ଶକ୍ରାଦୟୋଽପି ବିଜିତାସ୍ତ୍ୱ ବଳାଃ କଥଂ ତାଃ । ୧୦ ।

ନୁହନ୍ତି ଅବଳା ଦୁର୍ବଳା ନାରୀ
କବିଙ୍କର ଏହା କଥା ଚାତୁରୀ,
ଇନ୍ଦ୍ରଦେବ ଆଦି ଦେବତା ଗଣ
ଆକର୍ଷଣ କରି ପାରନ୍ତି ମନ ।

ସରଳ ତରଳ କଟାକ୍ଷ ତୋଳି
ହୃଦେ ସମ୍ମୋହନ ଦିଅନ୍ତି ବୋଳି,
ସେ ନାରୀ ଅଟନ୍ତି ଦୁର୍ବଳା କେବେ ?
ନିଖିଳ ସୌନ୍ଦର୍ଯ୍ୟ ରୂପ ବିଭବେ ।

ନୂନମାଜ୍ଞାକରସ୍ତସ୍ୟାଃ ସୁଭ୍ରୁବୋ ମକରଧ୍ୱଜଃ
ଯତସ୍ତନ୍ନେତ୍ର ସଂଚାର ସୂଚିତେଷୁ ପ୍ରବର୍ତ୍ତତେ । ୧୧ ।

'କନ୍ଦର୍ପଦର୍ପ ତୁମ ଦେଖାଅ କିମ୍ପା !
'କାମଭୁବନ ରାଜ' ନାମଟି ଫମ୍ପା,
ତୁମେ ତ ଆଜ୍ଞାବହ, କାମିନୀଙ୍କର -
ଆଜ୍ଞା ଦିଅଇ କାମ କଟାକ୍ଷେ ତା'ର ।
ଯେ ଯୁବା ହୃଦ ମନ ଦହିବା ପାଇଁ -
ନୟନ ସଙ୍କେତରେ କହନ୍ତି, ଯାଇ
କାମ ଅଗ୍ନିରେ ତାକୁ କର ଦହନ,
କାମିନୀ ଭୃତ୍ୟ ତୁମେ ଆହେ ମଦନ !
ବୃଥା ଆଟୋପ,
କି ଲାଭ ପ୍ରକାଶିଲେ ବିଧିରେ କୋପ !'

କେଶାଃ ସଂଯମିନଃ ଶ୍ରୁତେରପି ପରଂ ପାରଂଗତେ ଲୋଚନେ
ଅନ୍ତର୍ବକ୍ତ୍ରମପି ସ୍ୱଭାବଶୁଚିଭିଃ କୀର୍ଣ୍ଣଂ ଦ୍ୱିଜାନାଂ ଗଣୈଃ ।
ମୁକ୍ତାନାଂ ସତତାଧିବାସ ରୁଚିରୌ ବକ୍ଷୋଜ କୁମ୍ଭାବିମା -
ବିଥ୍ଥଂତନ୍ୱି ବପୁଃ ପ୍ରଶାନ୍ତମପି ତେ ରାଗଂ କରୋତ୍ୟେବନଃ ।୧୨ ।

କୃଷ୍ଣକେଶପାଶ ତା' ଚୂର୍ଣ୍ଣ କୁନ୍ତଳ
ସୁସଜ୍ଜିତ ମଧ ସଂଯମିତ,
ସରୋଜ ନୟନବେନି ବନିତା'ର
ଆକର୍ଣ୍ଣ ଅଟେ ଲମ୍ବିତ ।
ଶୁଭ୍ରଦନ୍ତ ପନ୍ତି ଶୁଚି ସ୍ନିଗ୍ଧ ଅତି
ବଢ଼ାଏ ଆନନ ଶୋଭା,
ଗଳା ମୁକ୍ତାମାଳ, ତା' ଚଳ ଚଞ୍ଚଳ
ପ୍ରକାଶେ ବକ୍ଷୋଜ ବିଭା ।
ଶାନ୍ତ ସୁଲଳିତ ତରୁଣୀର ତନୁ
ବହିଛି ତାରୁଣ୍ୟ ଭାର,
ତଥାପି କାହିଁକି ବିରାଗର ଛାୟା
ଘୋଟିଛି ଅନ୍ତରେ ମୋର ? ?

ମୁଗ୍ଧେ ଧାନୁଷ୍କତା କେୟମପୂର୍ବା ତ୍ୱୟି ଦୃଶ୍ୟତେ
ଯୟା ବିଧ୍ୟସ୍ ଚେତାଂସି ଗୁଣୈରେବ ନ ସାୟକୈଃ ।୧୩ ।
ସତି ପ୍ରଦୀପେ ସତ୍ୟଗ୍ନୌ ସତ୍ସୁ ତାରାମଣୀନ୍ଦୁଷୁ
ବିନା ମେ ମୃଗଶାବାକ୍ଷା ତମୋଭୂତମିଦଂ ଜଗତ୍ । ୧୪ ।

ହେ ମୁଗ୍ଧା ନାୟିକା !
ହାତରେ ଧରିଛ ତୁମେ ଏପରି ସାୟକ,
ଧନୁର୍ବାଣ ନ ଯୋତିଲେ ମଧ,
ଅନ୍ୟର ହୃଦୟ ତୁମେ କରିପାର ବିଦ୍ଧ ।
ଏ କୌଶଳ ଶିଖାଇଲା କିଏ
ଯାହା ନିତ୍ୟ ଏତେ ଶକ୍ତି ଦିଏ !!!

ହେ ମୁଗ୍ଧା ନାୟିକା ।
ତୁମେ ଏକ ଅଲିଭା ପ୍ରଦୀପ,
କାଳ କାଳ ଧରି ତୁମ ଦୀପ୍ତ ରୂପ ଶିଖା
ହୁଏନି ଗୋ, ହୁଏନି ନିର୍ବାପ ।
ଚନ୍ଦ୍ର ସୂର୍ଯ୍ୟ, ତାରା ବୀଥି –
ଉଦୟାସ୍ତ ଲାଗିଛି ସର୍ବଦା,
ଅନାହତ ଅଟେ ସଖି
ଯୁଗେ ଯୁଗେ ତୁମ ରୂପଶିଖା ।
ଯଦି କେବେ ହୋଇଯିବ ନିର୍ବାପିତ ଏହା
ଏ ବିଶ୍ୱରେ ଘୋଟିଯିବ ଅନ୍ଧକାର ମହା ।

**ଉଦ୍‌ବୃତ୍ତଃ ସ୍ତନଭାର ଏଷ ତରଳେ ନେତ୍ରେ ଚଳେ ଭ୍ରୂଲତେ**
**ରାଗାଧିଷ୍ଠିତ ମୋଷ୍ଠପଲ୍ଲବମିଦଂ କୁର୍ବନ୍ତୁ ନାମ ବ୍ୟଥାଂ ।**
**ସୌଭାଗ୍ୟା କ୍ଷରମାଳିକେବ ଲିଖିତା ପୁଷ୍ପାୟୁଧେନ ସ୍ୱୟଂ**
**ମଧ୍ୟସ୍ଥାପି କରୋତି ତାପମଧିକଂ ରୋମାବଳିଃ କେନ ବା । ୧୫ ।**

ପ୍ରେମ ରସଘନ, ବିମୁଗ୍ଧ ନୟନ
ଉଦ୍‌ବୃତ୍ତ ପୟୋଧର,
ଲୀଳା ଚଞ୍ଚଳ ଭ୍ରୂଲତା ବିଳାସ
ତା' ନୟନ ଢ଼ଳ ଢ଼ଳ ।
ଓଷ୍ଠାଧର ତା'ର ପଲ୍ଲବ ପାଟଳ
ରୂପ ଲାବଣ୍ୟ ଝରା,
କନ୍ଦର୍ପ ତୂଳି ରଚିଛି ରୋମାଳୀ
ବନ୍ଦିନୀ ବାସ କାରା
ରସିକ ଜନର ଭ୍ରାନ୍ତି,
ଚିତ୍ତେ ଚର୍ଚ୍ଚିତ ରମଣୀର ରୂପକାନ୍ତି ।

ଗୁରୁଣା ସ୍ତନ ଭାରେଣ ମୁଖଚନ୍ଦ୍ରେଣ ଭାସ୍ୱତା
ଶନୈଶ୍ଚରାଭ୍ୟାଂ ପାଦାଭ୍ୟାଂ ରେଜେ ଗ୍ରହମୟୀବ ସା । ୧୬ ।

ସେ ନାରୀଗଣ !
ଧାରଣ କରି, ନବ ଗ୍ରହ ଭୂଷଣ
ସେ 'ଗ୍ରହମୟୀ'
ବିରଳ ଉପହାରେ, ଲିହିଛି ବିହି ।

ତରୁଣୀ ବକ୍ଷଭାର ଅଟଇ ଗୁରୁ
ମୁଖେ ଚନ୍ଦ୍ରମା ହସେ ଶୁଭ୍ରିମା ଚାରୁ ।
ପାଦରେ ଶନିଶ୍ଚର ତା' ଗତି ମନ୍ଦ
ବୁକୁରେ 'ଗୁରୁ' ବାସ, ତୋଳେ ସେ ଛନ୍ଦ ।
କରନ୍ତି ବାସ ସବୁ ଗ୍ରହ ତା' ଦେହେ
ସର୍ବ ବିଭୂତିମୟୀ ଅଟଇ ସିଏ
ସେ ଗ୍ରହମୟୀ,
ବିରଳ ଉପହାରେ ଲିହିଛି ବିହି ।

ମୁଖେନ ଚନ୍ଦ୍ରକାନ୍ତେନ ମହାନୀଳୈଃ ଶିରୋରୁହୈଃ
କରାଭ୍ୟାଂ ପଦ୍ମରାଗାଭ୍ୟାଂ ରେଜେ ରତ୍ନମୟୀ ବସା । ୧୭ ।

କି ଶୋଭାବନ,
ଅଟଇ ମଣିମୟୀ ନାରୀ ରତନ ।
ମୁଖ ତା' ଚନ୍ଦ୍ରକାନ୍ତ କି ମନୋହର
କେଶ ତା' ଇନ୍ଦ୍ରନୀଳ କେଡେ ରୁଚିର,
କରେ ତା' ପଦ୍ମରାଗ ସେ 'ମଣିମୟୀ'
ଅଟନ୍ତି ନାରୀଗଣ ରତନମୟୀ
କି ଭାଗ୍ୟବତୀ,
ମହିମାମୟୀ ଲଭି ବିଭୁ ବିଭୂତି ।

ତସ୍ୟାସ୍ତନୌ ଯଦି ଘନୌ ଜଘନଂ ଚ ହାରି
ବକ୍ତ୍ରଂ ଚ ଚାରୁତବ ଚିତ୍ତ କିମାକୁଳତ୍ୱଂ ।
ପୁଣ୍ୟଂ କୁରୁଷ୍ୱ ଯଦି ତେଷୁ ତବାସ୍ତି ବାଞ୍ଛା
ପୁଣ୍ୟୈର୍ବିନା ନ ହି ଭବନ୍ତି ସମୀହିତାର୍ଥାଃ । ୧୮ ।

ରମଣୀ ରାଣୀ
ସେ ବିନୋଦିନୀ,
ପୟୋଧର ତା'ର ଅଟଇ ପୀନ
ମୃଦୁଳ ତାହାର ଘନ ଜଘନ ।
ତା'ମୁଖ ଚନ୍ଦ୍ରମା ଲାବଣ୍ୟମୟୀ
ସ୍ନିଗ୍ଧ ସୁକୁମାର ନୟନ ଦୁଇ,
ତା' ସୁଷମା ସୁଧା କରିବ ପାନ
କିମ୍ପା ବ୍ୟାକୁଳିତ ଏ ଚିତ୍ତ ମନ !
ଜାଣେନି ସେ କି,
ଯଦି ନାହିଁ ପୁଣ୍ୟ, ତା' ମିଳିବକି ?
ପୁଣ୍ୟେ ଚିତ୍ତ ମନ ଢ଼ାଳିଲେ ଅବା
ମିଳିବ ସେ ଧନୀ ବିଭବ ଶୋଭା ।

ଇମେ ତାରୁଣ୍ୟଶ୍ରୀନବପରିମଳାଃ ପ୍ରୌଢ଼ ସୁରତ -
ପ୍ରତାପ ପ୍ରାରମ୍ଭାଃ ସ୍ମର ବିଜୟଦାନପ୍ରତିଭୁବଃ ।
ଚିରଂ ଚେତଶ୍ଚୋରା ଅଭିନବ ବିକାରୈକଗୁରବୋ
ବିଳାସ ବ୍ୟାପାରାଃ କିମପି ବିଜୟନ୍ତେ ମୃଗଦୃଶାଂ । ୧୯ ।

ଅଭିନବ ନବ ଜରୁଣୀର ଶୋଭା
ପରିମଳ ପ୍ରୀତି ରାଗ
ସୁରତ ପ୍ରତାପ ଆରମ୍ଭ କରଇ
ପ୍ରକାଶି ପ୍ରଣୟ ଭାବ

କନ୍ଦର୍ପ ଦର୍ପ କରେ ପ୍ରଖରିତ
ପରଷି ରସାନୁଭୂତି,
ନବ ନବ ଭାବେ ନବୀନା ହରଇ
ନିଖିଳ ଚିତ୍ତବୃତ୍ତି ।

ସେ ମୃଗ ନୟନା ରସାମୃତ ଲୀଳା
କାହାର ବା ନୁହେ ପ୍ରିୟ,
ନ ଛୁଏଁ କାହାର ହୃଦୟକୁ ତା'ର
ଶୃଙ୍ଗାର ଅଭିନୟ !

ପ୍ରଣୟମଧୁରାଃ ପ୍ରେମୋଦରା ରସାଶ୍ରୟତଂ ଗତାଃ
ଭଣିତି ମଧୁରା ମୁଗ୍ଧପ୍ରାୟାଃ ପ୍ରକାଶିତ ସଂମ୍ମଦାଃ ।
ପ୍ରକୃତି ସୁଭଗା ବିଶ୍ରମ୍ଭାର୍ଦ୍ରାଃ ସ୍ମରୋଦୟ ଦାୟିନୋ
ରହସି କିମପି ସ୍ୱୈରାଳାପା ହରନ୍ତି ମୃଗୀଦୃଶାଂ ।୨୦ ।

ସୁରତ ସଙ୍ଗିନୀ ରସବିଳାସିନୀ ଅଟଇ ନାରୀ
ପ୍ରଣୟ ମଦିରା ପ୍ରମୋଦ ବିହ୍ୱଳା ତା'ରୂପ ଶିରୀ ।
ପ୍ରୀତି ସୁହାଗିନୀ, ମଧୁର ଭାଷିଣୀ ପ୍ରଣୟାଳାପ
ରହସ୍ୟ ରୋମାଞ୍ଚେ ଶାନ୍ତ କରିଥାଏ ବିରହ ତାପ ।
ମନ୍ମଥମୟୀ ପ୍ରୀତି ସମ୍ଭାଷଣେ ଉଲ୍ଲାସ ଭରେ
କିଣିନିଏ ମନ ପ୍ରଣୟ କୂଜିତ କଣ୍ଠସ୍ୱରେ ।
ଅନୁପମା ନାରୀ ସେ ଅନୁପମା,
ରୂପ ରାଇଜର ସେ ତିଳୋତ୍ତମା ।
ସେ ତିଳୋତ୍ତମା ।

•

ଇତି ନାରୀ ପ୍ରଶଂସା ।

# ସମ୍ଭୋଗ ବର୍ଣ୍ଣନା

ବିଶ୍ରମ୍ୟ ବିଶ୍ରମ୍ୟ ବନଦ୍ରୁମାଣାଂ
ଛାୟାସୁ ତନ୍ୱୀ ବିଚଚାର କାଚିତ୍,
ସ୍ତନୋତ୍ତରୀୟେଣ କରୋଦ୍ଧୃତେନ
ନିବାରୟନ୍ତୀ ଶଶିନୋ ମୟୂଖାନ୍ । ୨୧ ।

ସେ ନାରୀ ଉରଜ
ଅଟେ ପୃଥୁଳା,
କୁଚ କୁମ୍ଭରେ କମ୍ପନ ତୋଳେ
ଚନ୍ଦ୍ରଶାଳା, ଚନ୍ଦ୍ରଶାଳା ।

ବିରହିଣୀ ନାରୀ ଉତ୍ତରୀ ତୋଳି
ନିବାରେ ତାକୁ,
ଜ୍ୟୋତ୍ସ୍ନା ପ୍ରଲେପେ ଜ୍ୱାଳିତ ଯେ ଜ୍ୱାଳା
ଲିଭାଇ ବାକୁ ।
ବିରହ କରିଛି ଶୀର୍ଣ୍ଣ ତନୁ,
ପୋଛି ପାରୁନି ସେ ଶୃଙ୍ଗାର ସ୍ମୃତି
ତା' ତନୁ ମନୁ ।
ତରୁଲତା ଛାୟା ଆଶ୍ରୟ ପାଇଁ
ବନ ପଥେ ଭ୍ରମେ ସେ ବ୍ରୀଡାବତୀ,
ମଦନ ପୀଡାରେ ପୀଡିତା ଅତି ସେ
ପୀଡିତା ଅତି ।

ଅଦର୍ଶନେ ଦର୍ଶନ ମାତ୍ର କାମା
ଦୃଷ୍ଟା ପରିଷ୍ୱଙ୍ଗ ସୁଖେ କଲୋଳା,
ଆଲିଙ୍ଗିତାୟାଂ ପୁନରାୟତାକ୍ଷ୍ୟା
ମାଶାସ୍ମହେ ବିଗ୍ରହୟୋ ରଭେଦଂ ।୨୨ ।

ପ୍ରଣୟିନୀ ମୁଖ ଚନ୍ଦ୍ରମା ଯଦି
ନମିଳେ ଦେଖା,
ବ୍ୟାକୁଳିତ ମନ ଦର୍ଶନ ପାଇଁ
ସେ ପ୍ରୀତି ଲେଖା ।
ସାକ୍ଷାତ୍ ଯଦି ମିଳିଯାଏ କ୍ଷଣେ,
ଆଲିଙ୍ଗନ -
ମୁଦ୍ରାରେ ଖାଲି ବନ୍ଦି ହେବାକୁ,
ବ୍ୟାକୁଳ ମନ ।
ଥରେ ମିଳିଗଲେ, ନିବିଡତା ସୁଖ -
ଭିନ୍ନ ଦେହ,
ଭିନ୍ନ ହେବାକୁ ଚାହାନ୍ତି ନାହିଁ, ସେ
ମଗ୍ନ ମୋହ ।
କି ଆକର୍ଷଣ,
ଭିନ୍ନ ହେଲେବି କେଡ଼େ ଅଭିନ୍ନ !

ମାଲତୀ ଶିରସି ଜୃମ୍ଭଣଂ ମୁଖେ
ଚନ୍ଦନଂ ବପୁଷି କୁଙ୍କୁମାବିଳଂ ।
ବକ୍ଷସି ପ୍ରିୟତମା ମଦାଳସା
ସ୍ୱର୍ଗ ଏବ ପରିଶିଷ୍ଟ ଆଗମଃ ।୨୩ ।

ଘୋଟିଅଛିମନେ ଶୃଙ୍ଗାର ଭାବର
ଖରା ଓ ଛାଇ,
ବାର ବାର ବାର ମଦାଳସା ମୁଖେ
ଆସୁଛି ହାଇ ।

ଶିର ଭୂଷଣ ତା' ମାଳତି ଫୁଲ
ଦେହରେ କୁଙ୍କୁମ ଶିରୀ ଚନ୍ଦନ -
ମାଗୁଛି ମୂଲ ।
ସିଏ ପାଶେ ଥିଲେ ଲାଗେ ସତେ ଅବା
ସ୍ୱର୍ଗ ଅଛି ।
ରହିବାକୁ କେବେ ଇଛା ହୁଏ ନାହିଁ
ତାକୁ ମୁରୁଛି ।
ସେ ମୋହମୟୀ,
ମୋହ ବାସନାର ବଢ଼ିଲା ନଈ ।

ପ୍ରାପ୍ତାମେତି ମନାଗନାଗତରସଂ ଜାତାଭିଳାଷଂ ତତଃ
ସବ୍ରୀଡଂ ତଦନୁ ଶ୍ଳଥୋଦ୍ୟମମଥ ପ୍ରଧ୍ୱସ୍ତଧୈର୍ଯ୍ୟଂ ପୁନଃ ।
ପ୍ରେମାର୍ଦ୍ରଂ ସ୍ପୃହଣୀୟ ନିର୍ଭର ରହଃ କ୍ରୀଡା ପ୍ରଗଲଭଂ ତତୋ -
ନିଃସଙ୍ଗାଙ୍ଗ ବିକର୍ଷଣାଧିକ ସୁଖଂ ରମ୍ୟଂ କୁଳସ୍ତ୍ରୀରତଂ । ୨୪ ।

ସମ୍ମୁଖେ ଆସି କ୍ଷଣେ ହୋଇଲେ ଉଭା
ଦର୍ଶନେ ଇଛା ଜାତ ହୁଅଇ ଅବା,
କାମିନୀ କାମନାରୁ ଅଙ୍କୁରେ ମନେ
ଲଭିବାକୁ ପରଶ, ସେ ଚନ୍ଦ୍ରାନନେ ।

ଲଜ୍ଜାରେ ପାଟଳିମା ହୁଅଇ ମୁଖ
ଏକାନ୍ତ ଅଭିଳାଷ ପରଶସୁଖ,
ଶିଥିଳ ଉଦ୍ୟମ ତା' ହୁଏ ପ୍ରଖର
ଭାଙ୍ଗଇ ଧୈର୍ଯ୍ୟବନ୍ଧ, ତା' ବ୍ରୀଡାବାଡ଼ ।

ଶୃଙ୍ଗାର ରସେ ପୂର୍ଣ୍ଣ ହୃଦୟ ମନ
ସମ୍ଭୋଗ ସୁଧା ପାନେ ମନ ଉଛନ୍ନ,
ପ୍ରଣୟ ପଲ୍ଲବିତ ଉତ୍କଣ୍ଠା ଶେଷେ
ସମ୍ଭୋଗେ ହୁଏ ଲୀନ ପ୍ରୀତି ପରଶେ
କାମାକୁଳ ଅନ୍ତର,
ପ୍ରଣୟ ପରିତୋଷେ ହୁଏ ମଧୁର ।

ଉରସି ନିପତିତାନାଂ ସ୍ରସ୍ତଧମ୍ମିଲ୍ଲକାନାଂ
ମୁକୁଳିତ ନୟନାନାଂ କିଞ୍ଚିଦୁନ୍ମୀଳିତାନାଂ ।
ଉପରି ସୁରତଖେଦସ୍ୱି ନ୍ନଗଣ୍ଡସ୍ଥଳାନା -
ମଧରମଧୁ ବଧୂନାଂ ଭାଗ୍ୟବନ୍ତଃ ପିବନ୍ତି । ୨୫ ।

ନିରତ ସୁରତ ବିପରୀତ ବେଳେ
ଶୃଙ୍ଗାର ପୀଡିତା ନାରୀ
ଉରଜ ପଖାଳେ ବକ୍ଷ ଉପରେ
କୃଷ୍ଣ କେଶ ପାଶ ଖୋଲି ।
ପୀରତି ଚର୍ଚ୍ଚିତା ମୁକୁଳିତା ଦୃଶା
ଲାଜ ଲାଜ ଚାହାଣୀରେ,
ନୟନ ଯୁଗଳ ଦରମୁକୁଳିତ
ନିମଜ୍ଜିତ ବକ୍ଷପରେ ।
ସ୍ୱେଦ ଜର୍ଜରିତ ତା'ର ବକ୍ଷସ୍ଥଳ
ରତିକ୍ଳାନ୍ତ ବିନୋଦିନୀ,
ରକ୍ତିମ ଅଧର ମଧୁ ସେ ବଧୂର
ମିଳେ ଭାଗ୍ୟେ ଥିଲେ ପୁଣି ।
ସେ'ତ ବିଳାସିନୀ ନାରୀ
ଶୃଙ୍ଗାର ରସ ଶରୀରେ ରହିଛି ଭରି ।

ଆମୀଳିତ ନୟନାନାଂ ଯଃ ସୁରତରସୋଽନୁ ସଂବିଦଂ ଭାତି
ମିଥୁନୈର୍ମିଥୋ ବଧାରିତ ମବିତଥ ମିଦମେବ କାମନିର୍ବହଣଂ । ୨୬ ।

ସେ ଶୃଙ୍ଗାରିଣୀ
ଅର୍ଦ୍ଧ ନିମିଳିତ ନୟନ ବେନି,
ମାନିନୀ ସୁରତ ଉତ୍ସବେ ରତ
ସମ୍ଭୋଗ ତାହାର ଅପ୍ରତିହତ ।

ସେ ନୁହେଁ କେବେହେଁ ରତିରଙ୍କୁଣୀ
କାମ ଦେବଙ୍କର ଅର୍ଚ୍ଚନା ମଣି -
ସଜାଏ ତାହାର ପୂଜାମଣ୍ଡପ,
ସମ୍ଭ୍ରମେ ପାଳେ ତା' ଶୃଙ୍ଗାର ବ୍ରତ ।
ସେ ପୂଜାରିଣୀ
ମନମୋହିନୀ ।

ଇଦ ମନୁଚିତ ମକ୍ରମଶ୍ଚ ପୁଂସାଂ
ଯଦିହ ଜରାସ୍ୱପି ମାନ୍ମୋଥୋ ବିକାରଃ ।
ତଦପି ଚ ନ କୃତଂ ନିତମ୍ବିନୀନାଂ
ସ୍ତନ ପତନାବଧି ଜୀବିତଂ ରତଂ ବା ।୨୭ ।

ଜରା ଜର୍ଜରିତ ଅଟେ ଯେ ପୁରୁଷ
ଏତ ଅନୁଚିତ କର୍ମ,
କନ୍ଦର୍ପ ପୀଡିତ ହୋଇ ବ୍ୟାକୁଳିତ
ହେବା ନୁହେଁ ଜରା ଧର୍ମ ।

ତଥା ନିତମ୍ବିନୀ ବକ୍ଷୋଜ ଆନତେ
ଶୃଙ୍ଗାରେ ହୋଇବା ବଶ,
ନ ଅଟେ ବିହିତ, ହେବା ବିମୋହିତ
ସେବିବା ପ୍ରଣୟ ରସ ।

ରାଜଂସ୍ତୃଷ୍ଣାମ୍ବୁରାଶେର୍ନ ହି ଜଗତି ଗତଃ କଶ୍ଚଃ ଦେବାବସାନଂ
କୋବାର୍ଥୋଽର୍ଥୈଃ ପ୍ରଭୂତୈଃ ସ୍ୱ ବପୁଷି ଗଳିତେ ଯୌବନେ ସାନୁରାଗେ ।
ଗଚ୍ଛାମଃ ସଦ୍ମ ତାବଦ୍ ବିକଶିତ କୁମୁଦେନ୍ଦୀ ବରାଲୋକିନୀନା -
ମାକ୍ରମ୍ୟାକ୍ରମ୍ୟ ରୂପଂ ଝଟତି ନ ଜରୟା ଲୁପ୍ୟତେ ପ୍ରେୟସୀନାଂ । ୨୮ ।

ଆଶା ସିନ୍ଧୁକୁ ପାରେ କେ ଲଙ୍ଘିକହ
ତଥାପି ଧନ ତୃଷ୍ଣା ଲାଳସା ମୋହ,
ଜାଗ୍ରତ ଯାହାଠାରେ ସମ୍ଭୋଗ ଇଚ୍ଛା
ଅସ୍ତ ଯୌବନେ ମଧ ଭୋଗ ପିପାସା
କି ଲାଭ ତହିଁ,
ସରାଗ ଥାଇ ଯଦି ସାମର୍ଥ୍ୟ ନାହିଁ ।
କୁମୁଦ ଇନ୍ଦିବର ଫୁଟିବା ଯାଏ
ତଡାଗ ଜଳେ ନର ଆନନ୍ଦ ପାଏ,
ସେ ନ୍ୟାୟେ ଚାରୁ ନେତ୍ରୀ ସରୋଜମୁଖୀ
ଲାବଣ୍ୟ ସର ତା'ର ଯାଇନି ଶୁଖି ।
ଯୌବନ ଗତ,
ତଥାପି ରୂପ ଶିଖା ତା' ଉଦ୍ଦୀପିତ ।
ରସିକ ନର
ସମ୍ଭୋଗ ପାଇଁ ତା'ର ଇଚ୍ଛା ପ୍ରବଳ ।

ରାଗସ୍ୟାଗାରମେକଂ ନରକ ଶତମହାଦୁଃଖସଂପ୍ରାପ୍ତି ହେତୁ
ର୍ମୋହସ୍ୟୋପ୍ତତ୍ତିବୀଜଂ ଜଳଧର ପଟଳଂ ଜ୍ଞାନତାରାଧିପସ୍ୟ ।
କନ୍ଦର୍ପସ୍ୟୈକମିତ୍ରଂ ପ୍ରକଟିତ ବିବିଧ ସ୍ପଷ୍ଟ ଦୋଷ ପ୍ରବନ୍ଧଂ
ଲୋକେଽସ୍ମି ନ୍ନହ୍ୟନର୍ଥବ୍ରଜକୁଳ ଭବନଂ ଯୌବନା ଦନ୍ୟଦସ୍ତି । ୨୯ ।

ମାତ୍ସର୍ଯ୍ୟ ଅଟେ ସର୍ବ ନରକ ସ୍ଥଳ
କାରଣ ଅଟେ, ଶତ ମହା ଦୁଃଖର,
ଉତ୍ପତ୍ତି କରିଥାଏ ମୋହ ସେ ମନେ
ଜ୍ଞାନଚନ୍ଦ୍ରକୁ ଢ଼ାଙ୍କେ ପଟଳ ଘନେ ।

କନ୍ଦର୍ପ ଦୋଷ ଦୁଷ୍ଟ କରଇ ମନ
ନାନା ଅନର୍ଥର ସେ ଅଟେ କାରଣ,
କରଇ ଯୌବନକୁ ଯାତନା ଭୂମି
ମାତ୍ସର୍ଯ୍ୟ ଯଦି ହେଲା ତା' ଅନୁଗାମୀ ।
ତା'ଠାରୁ ଦୂରେ,
ରହିଲେ, ଯୌବନରେ ସମ୍ଭୋଗ ଭରେ ।

ଶୃଙ୍ଗାରଦ୍ରୁମନୀରଦେ ପ୍ରସୃମରକ୍ରୀଡା ରସ ସ୍ରୋତସି
ପ୍ରଦ୍ୟୁମ୍ନପ୍ରିୟ ବାନ୍ଧବେ ଚତୁରବାଙ୍ମୁକ୍ତା ଫଳୋଦନ୍ୱତି ।
ତନ୍ୱୀ ନେତ୍ରଚକୋର ପାର୍ବଣ ବିଧୌ ସୌଭାଗ୍ୟଲକ୍ଷ୍ମୀନିଧୌ
ଧନ୍ୟଃ କୋଽପିନ ବିକ୍ରିୟାଂ କଳୟତେ ପ୍ରାପ୍ତେ ନବେଯୌବନେ । ୩୦ ।

ନବଯୌବନ ସେ
ନବ ଯୌବନ,
କନ୍ଦର୍ପ ଦେବଙ୍କ ବାନ୍ଧବ ପୁଣ
ନବ ଯୌବନ ।

ତା' ହାତରେ ଅଛି ପଞ୍ଚ ଶାୟକ
ସେ'ତ ପୀରତିର ପ୍ରାଣ ନାୟକ,
ଶୃଙ୍ଗାର ତରୁର ଶୋଭା ତାରୁଣ୍ୟ
ସୁରତ ବିଳାସ କି ରସଘନ !

ନାରୀର ନୟନ ଚକୋର, 'ଚାନ୍ଦ'
ରୂପ ଜୋଛନାର ସେ ମକରନ୍ଦ,
ଶିରୀ ସୌନ୍ଦର୍ଯ୍ୟର ସେ ସୁରଧୁନୀ
ପ୍ରୀତି ପ୍ରଣୟର ସେ ମନ୍ଦାକିନୀ ।

ସେପରି ଯୌବନ ଲଭିଛି ଯିଏ
ମନେ ଅହଂକାର ଗର୍ବ ନ ଥାଏ,
ଧନ୍ୟ ସେ ନାରୀ
ଜୟ କରିଥାଏ ଦୃପ୍ତ ଯୌବନକୁ
ମନରେ ଲଳିତ ରସ ସଂଚାରି ।
ରସ ସଂଚାରି ।

ସଂସାରେଽସ୍ମିନ୍ନସାରେ କୁ ନୃପତିଭବନଦ୍ୱାର ସେବାକଳଙ୍କ
ବ୍ୟାସଙ୍ଗବ୍ୟସ୍ତଧୈର୍ଯ୍ୟଂ କଥଂମଲଧିୟୋ ମାନସଂ ସଂବିଦଧ୍ୟୁଃ ।
ଯଦ୍ୟେତାଃ ପ୍ରୋଦ୍ୟଦିନ୍ଦୁ ଦ୍ୟୁତିନିଚୟ ଭୃତୋ ନସ୍ୟୁରମ୍ଭୋଜନେତ୍ରାଃ
ପ୍ରେଙ୍ଖତ୍କାଞ୍ଚୀ କଳାପାଃ ସ୍ତନଭର ବିନମନ୍ମଧ ଭାଜ ସ୍ତରୁଣ୍ୟଃ । ୩୧ ।

ରମଣୀ ରାଣୀ !
କାଞ୍ଚିଦାମେ ସୁଶୋଭିତା ସେପୁଣି ।
ଚନ୍ଦ୍ରକାନ୍ତି ଜିଣା ତା' ଅପଘନ
କୁବଳୟ ଜିଣା ବେନି ନୟନ,
ଅଳ୍ପ ଅବନତ ତା' ପୟୋଧର
ସମ୍ଭାଳି ପାରିନି ରୂପର ଭାର ।

ସେପରି ରମଣୀ ଅଛନ୍ତି ବୋଲି
ସଂସାର ଯାତନା ଯାଆନ୍ତି ଭୁଲି
ବିବୁଧ ଜନେ -
ବିବ୍ରତ ନୁହନ୍ତି ରାଜ କଷଣେ ।

ସିଦ୍ଧାଧ୍ୟାସିତକନ୍ଦରେ ହରବୃଷସ୍କନ୍ଧାବରୁଗ୍ଣ ଦ୍ରୁମେ
ଗଙ୍ଗାଧୌତ ଶିଳାତଳେ ହିମବତଃ ସ୍ଥାନେ ସ୍ଥିତେ ଶ୍ରେୟସି ।
କଃ କୁର୍ବୀତ ଶିରଃ ପ୍ରଣାମମଳିନଂ ମ୍ଳାନଂ ମନସ୍ୱୀ ଜନୋ
ଯଦ୍‌ବିତ୍ରସ୍ତ କୁରଙ୍ଗଶାବନୟନା ନ ସ୍ୟୁଃ ସ୍ମରାସ୍ତ୍ରଂ ସ୍ତ୍ରିୟଃ । ୩୨ ।

କୈଳାସ କନ୍ଦର ସିଦ୍ଧ ଶିବପୁର
ହରବୃଷ ଉତ୍ପୀଡ଼ନେ,
ହୋଇଥାନ୍ତି ଭଗ୍ନ ଦ୍ରୁମଦଳ ରୁଗ୍ଣ,
ତା' ସ୍ୱଚ୍ଛନ୍ଦ ବିଚରଣେ ।

ଗଙ୍ଗାଧୌତ ଶିଳାତଳ ହିମସ୍ଥଳ,
ମନସ୍ୱୀ ତପସ୍ୱୀ ଗଣ
ତାକୁ ଛାଡ଼ି କିମ୍ବା କୁରଙ୍ଗୀ ନୟନା
ସ୍ମରାସ୍ତ୍ରେ ହୋଇବେ ଲୀନ ।

ସାଧନାର ପୀଠ ତାହା
ଶାନ୍ତି ସମାହିତ ଜୀବନ ପାଇଁ ତା'
ଫିଟାଏ ମୁକ୍ତିର ରାହା ।

**ସଂସାର ତବ ପର୍ଯ୍ୟନ୍ତପଦବୀ ନ ଦବୀୟସୀ**
**ଅନ୍ତରା ଦୁସ୍ତରା ନ ସ୍ୟୁର୍ଯ୍ୟ ତେ ମଦିରେକ୍ଷଣାଃ । ୩୩ ।**

ବାଳମୃଗ ପ୍ରାୟ ଚାରୁ ନୟନା
ଏ' ଭବ ଭବନେ ହୋଇଲେ ଊଣା,
ଏ' ସଂସାର କନ୍ଦର୍ପର ଗରିମା
କିପରି ରଚିବ ତା'ର ମହିମା -
ଯା' ଅନିବାର୍ଯ୍ୟ,
ତା'ର ବାରଣ କି ଅଟଇ କାର୍ଯ୍ୟ !

**ଦିଶ ବନହରିଣେଭ୍ୟୋ ବଂଶକାଣ୍ଡଚ୍ଛବୀନାଂ**
**କବଳମୁପଳ କୋଟିଚ୍ଛିନ୍ନମୂଳଂ କୁଶାନାଂ ।**
**ଶକଯୁବତି କପୋଳାପାଣ୍ଡୁ ତାମ୍ବୂଳବଲ୍ଲୀ-**
**ଦଳ ମରୁଣ ନଖାଗ୍ରୈଃ ପାଟିତଂ ବା ବଧୂଭ୍ୟଃ ।୩୪ ।**

ବାଉଁଶ ବଣ ପରି ବଢ଼ିଛି କୁଶ
ଉପଳ ଖଣ୍ଡେ ଛିନ୍ନ କରିସେ ଘାସ,
ବନ ହରିଣୀ ମୁଖେ ଦିଅ ତା' ଭରି
ଭୁଞ୍ଜାଅ ଶ୍ରଦ୍ଧାଭରେ ପ୍ରେମ ଆଚରି ।

ଅବା, ଶକ ଯୁବତୀ ଗଉର ଗଣ୍ଡ
ପରି ପ୍ରତୀତ ନାଗବଲ୍ଲୀକୁ ଖଣ୍ଡ –
କରି, ନଖାଗ୍ରେ ଚିରି ପ୍ରେୟସୀ ମୁଖେ
ତାମ୍ବୁଳ ଭରିଦିଅ ପ୍ରୀତି ସରାଗେ ।
ସେ ନବବଧୂ,
ଅନ୍ତରେ ଭରି ଦେବ ପ୍ରଣୟ ମଧୁ ।

**ଅସାରାଃ ସର୍ବେ ତେ ବିରତିବିରସାଃ ପାପବିଷୟା**
**ଜୁଗୁପ୍ସ୍ୟନ୍ତାଂ ଯଦ୍‌ବାନନ୍ନୁ ସକଳ ଦୋଷାସ୍ପଦ ମିତି ।**
**ତଥାପ୍ୟେତଦ୍‌ଭୂମୌ ନହି ପରହିତାତ୍ପୁଣ୍ୟମଧିକଂ**
**ନ ଚାସ୍ମିନ୍ ସଂସାରେ କୁବଳୟଦୃଶୋ ରମ୍ୟମପରଂ । ୩୫ ।**

ସମସ୍ତେ କହନ୍ତି, "ଏ'ତ ଅଳୀକ ସଂସାର
ଏ' ସୁଖ ସମ୍ପତ୍ତି ତୁଚ୍ଛ ଏ ଭୋଗ ଭଣ୍ଡାର,
ଏହା ଅଟେ ଘୃଣ୍ୟ ପାପମୟ,
ଏଥିରେ ତ, ନାହିଁ କିଛି ଶ୍ରେୟ ।"

ତଥାପି ଯା ପୁଣ୍ୟପଥ, ପର ଉପକାର,
ଏ' ସଂସାରେ ନୁହେଁ କେବେ ଅଳୀକ ଅସାର,
ସବୁଠାରୁ ମନୋହର ସୁନ୍ଦରୀ ରମଣୀ
ସୌନ୍ଦର୍ଯ୍ୟର ନିଧି ସେତ ପ୍ରୀତି କୁମୁଦିନୀ ।
କିପରି କହିବା ତାକୁ ଅସାର ଅଳୀକ
ପ୍ରୀତି ତୀର୍ଥ ବସନ୍ତର ଗାନମୟୀ ପିକ ।।

**ମାତ୍ସର୍ଯ୍ୟମୁତ୍ସାର୍ଯ୍ୟ ବିଚାର୍ଯ୍ୟ କାର୍ଯ୍ୟମାର୍ଯ୍ୟାଃ ସମର୍ଯ୍ୟା ଦମିଦଂ ବଦନ୍ତୁ**
**ସେବ୍ୟା ନିତମ୍ବାଃ କିମୁଭୂଧାରାଣାମୁତ ସ୍ମରସ୍ମେର ବିଳାସିନୀନାଂ । ୩୬ ।**

ପ୍ରାଜ୍ଞଜନେ ଶାନ୍ତମନେ କରନ୍ତୁ ବିଚାର
କହନ୍ତୁ ସେ ମନଖୋଲା କଥା ହୃଦୟର,
ମନରେ ନରଖି ଦ୍ୱେଷ ଅବା ପକ୍ଷପାତ
କହନ୍ତୁ ସଜ୍ଜନବୃନ୍ଦ ଯା' ଅଟେ ଉଚିତ ।

ଯୁବଜନ ଆଦରିବ କେଉଁ କଟୀ ସେବା
ମହିଧର କଟୀ ଅବା ତନ୍ୱୀ କଟୀ ଯୁବା,
ଆଖିଠାରି ଡାକେ ନାରୀ କଟୀର କିଙ୍କିଣି
ନେଇ ଅଛି ଯାହା ଯୁବା ହୃଦୟକୁ କିଣି ।

**ସଂସାରେ ସ୍ୱପ୍ନସାରେ ପରିଣତି ତରଳେ ଦ୍ୱେ ଗତୀ ପଣ୍ଡିତାନାଂ**
**ତତ୍ତ୍ୱଜ୍ଞାନାମୃତାମ୍ଭଃ ପ୍ଲବଲଳିତଧିୟାଂ ଯାତୁ କାଳଂ କଦାଚିତ୍ ।**
**ନୋଚେ ନ୍ମୁଗ୍ଧାଙ୍ଗନାନା ସ୍ତନଜଘନଘନା ଭୋଗସମ୍ଭୋଗିନୀନାଂ**
**ସ୍ଥୁଲୋପସ୍ଥସ୍ଥଳୀଷୁ ସ୍ଥଗିତକରତଳସ୍ପର୍ଶଲୀଳୋଦ୍ୟମାନାଂ ।୩୭ ।**

ପଣ୍ଡିତ ଜନ,
ଦ୍ୱିବିଧ ଗତି ତାଙ୍କ ଅଟଇ ପୁଣ ।
ଅସାର ସ୍ୱପ୍ନସାର ଅଟେ ସଂସାର
ବ୍ରହ୍ମୋପଲବ୍ଧି ପାଇଁ ବ୍ୟଗ୍ର ଅନ୍ତର,
କାମ କାମନା ବହ୍ନି ତଥାପି ଜଳେ
ଶୃଙ୍ଗାର ସ୍ରୋତ ବହେ ଅନ୍ତର ତଳେ ।

ଭୋଗ ନଗର ତ୍ୟାଗ ତୁଠରେ ବସା
ଆକୁଳ କରେ ମନ, ସେ ମଦାଳସା,
ନବ ଯୁବତୀ,
ଘନ ଜଘନ ବକ୍ଷ ଟାଣେ ତା' ମତି ।

**ଆବାସ କ୍ରିୟତାଂ ଗାଙ୍ଗେ ପାପ ହାରିଣି ବାରିଣି**
**ସ୍ତନଦ୍ୱୟେ ତରୁଣ୍ୟା ବା ମନୋହାରିଣି ହାରିଣି । ୩୮ ।**

ଗଙ୍ଗା ବାରି କରେ ପାପ ହରଣ
ବିକଳ ହୁଅନ୍ତି ଜଗତ ଜନ,
କରିବାକୁ ଆସି ତା' କୂଳେ ବାସ
ଲଭିବାକୁ ତା'ର ପୁଣ୍ୟ ପରଶ ।

ଆଉ କେତେ ଲୋକ ଛନ୍ତି ଜଗତେ
ରହିବେ ତରୁଣୀ ବକ୍ଷ ପୁରତେ,
ତାରୁଣ୍ୟ ଲାବଣ୍ୟ ବକ୍ଷୋଜ ବେନି
ମନୋହାରିଣୀ ସେ ମନୋହାରିଣୀ ।

ତାରୁଣ୍ୟର ଏକ ତରଳ ନଈ
ବହୁଅଛି ଛଳ ଛଳ ସେ ହୋଇ,
ବକ୍ଷୋଜ ବେନି
ମନୋହାରିଣୀ ତା ମନୋହାରିଣୀ ।

**କିମିହ ବହୁଭିରୁକ୍ତୈର୍ଯୁକ୍ତିଶୂନ୍ୟୈଃ ପ୍ରଳାପୈ**
**ର୍ଦ୍ୱୟମିହ ପୁରୁଷାଣାଂ ସର୍ବଦା ସେବନୀୟଂ,**
**ଅଭିନବ ମଦଲୀଳା ଲାଳସଂ ସୁନ୍ଦରୀଣାଂ**
**ସ୍ତନଭର ପରିଖିନ୍ନଂ ଯୌବନଂ ବା ବନଂ ବା । ୩୯ ।**

ଯୁକ୍ତି ବିହୀନ ଖାଲି ପ୍ରଳାପ ତୋଳି
କି ଲାଭ ଅଛି ଏଥି ଅଯଥା ଖାଲି -
ସମୟ ଅପଚୟ, 'ପୁରୁଷକାର'
ଅଟଇ ଶ୍ରେଷ୍ଠ, ଆଉ ସବୁ ଅସାର ।

ଲୀଳା ଚଞ୍ଚଳା ନବ ଯୁବତୀ ଗଣ
ମଦ ଲାଳସାମୟୀ ମଧୁ ଯୌବନ,
ଉନ୍ନତ ପୟୋଧର ସଂଭୋଗ ସୁରା
ପାନ କରିଣ ହୁଅ, ହେ ଆତ୍ମହରା ।

ଅଳୀକଭାବି ଯଦି ବିମନ ମନ
ତେବେ ଆଦରି ନିଅ ଗହନ ବନ ।

ସତ୍ୟଂ ଜନା ବଚ୍ମି ନ ପକ୍ଷପାତା
ଲ୍ଲୋକେଷୁ ସପ୍ତସ୍ୱପି ତଥ୍ୟ ମେତତ୍ ।
ନାନ୍ୟନ୍ମନୋହାରି ନିତମ୍ବିନୀ ଭ୍ୟୋ
ଦୁଃଖୈ କ ହେତୁର୍ନ ଚ କଶ୍ଚିଦନ୍ୟଃ । ୪୦ ।

ନିରାଟ ସତ୍ୟ ମୁହିଁ କହୁଛି ବାରବାର
ପୀରତି ପକ୍ଷପାତ କରିଛି ମନୁ ଦୂର,
ନାରୀଠୁ ବଳି ଭବେ କେ ନୁହେଁ ଶ୍ରେଷ୍ଠ ଆଉ
ଏ' ସପ୍ତ ଭୁବନରେ ତା' ରୂପ ଥାଉ ଥାଉ ।

ରୂପ ଗୁଣରେ ସିଏ ଅଟଇ ତିଳୋତ୍ତମା
ଅଟଇ ପ୍ରୀତିମୟୀ ଏ ବିଶ୍ୱ ମନୋରମା,
ସେ ଶୋଭାମୟୀ ମୁଗ୍ଧା ପୃଥୁଳା ନିତମ୍ବିନୀ
ଅଟଇ ଜଗତର ସେ ଚିତ୍ତ ବିନୋଦିନୀ ।

ହେଲେ ବି ପ୍ରୀତିପ୍ରଦା ଯନ୍ତ୍ରଣାମୟୀ ସିଏ
ନିଖିଳ ପ୍ରାଣେ ସୁଖ ଦୁଃଖ ସେ ଭରିଦିଏ ।

•

# ନାରୀନିନ୍ଦା

କାନ୍ତେତ୍ୟୁତ୍ପଲଲୋଚନେତି ବିପୁଲଶ୍ରୋଣୀଭରେତ୍ୟୁନ୍ନମତ୍
ପୀନୋତ୍ତୁଙ୍ଗ ପୟୋଧରେତି ସୁମୁଖାମ୍ଭୋଜେତି ସୁଭ୍ରୂରିତି ।
ଦୃଷ୍ଟ୍ୱା ମାଦ୍ୟତି ମୋଦତେଽଭିରମତେ ପ୍ରସ୍ତୌତି ବିଦ୍ୱାନପି
ପ୍ରତ୍ୟକ୍ଷାଶୁଚିଭସ୍ତ୍ରିକାଂ ସ୍ତ୍ରିୟମହୋ ମୋହସ୍ୟ ଦୁଶ୍ଚେଷ୍ଟିତଂ । ୪୧ ।

ସେ ନିତମ୍ବିନୀ
ରମା ରମଣୀ ।
ନୀଳ ପଦ୍ମ ନିଭ ନୟନ ତା'ର
ମୁକୁଳିତ ପୀନ ତା' ପୟୋଧର,
ସରୋଜ ବଦନା ସେ ସ୍ମିତାନନା
ଚାରୁ ଭୀରୁ ଭୃରୁ ଲୋକନୟନା ।
ତଥାପି ସେ'ତ,
ଅପବିତ୍ର ଅଙ୍ଗ ଚର୍ମ ଆବୃତ ।

ତା' ଅଳୀକ ରୂପେ ବିବୁଧଗଣ
ମୋହମୁଗ୍ଧ ସର୍ବ ଜଗତ ଜନ,
ଶୃଙ୍ଗାର ବିଳାସେ ହୁଅନ୍ତି ମତ୍ତ
ତା' ଚିନ୍ତନେ ସଦା ଚର୍ଚ୍ଚିତ ଚିତ୍ତ ।

ଅସାର ଅଳୀକ ଏ' ରସକ୍ରୀଡା
ବିକଳେ ଭୋଗନ୍ତି ସୁରତ ପୀଡା,
ଧନ୍ୟ ଏ' ଲୋକ,
ବିବେକ ଥାଇବି, କି ଅବିବେକ !

**ସ୍ମୃତା ଭବତି ତାପାୟ ଦୃଷ୍ଟ୍ୟା ଚୋନ୍ମାଦକାରିଣୀ**
**ସ୍ପୃଷ୍ଟ୍ୟା ଭବତି ମୋହାୟ ସା ନାମ ଦୟିତା କଥଂ । ୪୨ ।**

ଅତି ବିଚିତ୍ର ଏ' ସଂସାର ରୀତି
'ପ୍ରିୟା' ବୋଲି ଲୋକେ ତାକୁ କହନ୍ତି,
ଯାହାର ଦର୍ଶନେ ସ୍ପର୍ଶନେ ସଦା
ଜାଗଇ ଉନ୍ମାଦ, ସନ୍ତାପ ପ୍ରଦା -
ଅଟେ ସେ ନାରୀ,
ସଂସାର ଚଳଇ ତାକୁଇ ଧରି ।

**ତାବ ଦେବାମୃତମୟୀ ଯାବଲ୍ଲୋଚନଗୋଚରା**
**ଚକ୍ଷୁଷ୍ପଥାଦତୀତା ତୁ ବିଷାଦପ୍ୟତିରିଚ୍ୟତେ । ୪୩ ।**

ଯେ ପର୍ଯ୍ୟନ୍ତ ଥାଏ ଦୃଷ୍ଟି ସୀମାରେ
ସେତ ସୁଧାମୟୀ ଅନ୍ତର ଭରେ,
ଦୃଷ୍ଟିପଥୁ ଦୂର ହେଲେ ଯୁବତୀ
ସୃଷ୍ଟି ହୁଏ ତା'ର ବିଷମ ଗତି ।

ତଥାପି ଅଟେ ସେ ଜୀବନମୟୀ
ରହସ୍ୟମୟୀ ସେ ରହସ୍ୟମୟୀ ।

**ନା ମୃତଂ ନ ବିଷଂ କିଞ୍ଚିଦେକାଂ ମୁକ୍ତ୍ୱା ନିତମ୍ବିନୀଂ**
**ସୈବାମୃତୟତା ରକ୍ତା ବିରକ୍ତା ବିଷବଲ୍ଲରୀ । ୪୪ ।**

ଅମୃତମୟୀ ନାରୀ
ଯେତେବେଳ ଯାଏ ଅନୁରକ୍ତା ସେ
ଢ଼ାଳେ ଅମୃତ ବାରି,
ଅମୃତମୟୀ ନାରୀ ।

ଯେବେ ହୋଇଯାଏ ବିରକ୍ତ ସିଏ
ବିପରୀତ ତା'ର ଗତି,
ପାଲଟି ଯାଏ ସେ ବିଷବଲ୍ଲରୀ
ନୁହେଁ ଆଉ ପ୍ରୀତିମତୀ ।

ଏକାଧାରେ ସିଏ, 'ଅମୃତ ଆଉ ବିଷ'
ପରିବର୍ତ୍ତନ କରିଥାଏ ତାକୁ
ପରିସ୍ଥିତି ପରିବେଶ ।

**ଆବର୍ତ୍ତଃ ସଂଶୟାନାମବିନୟ ଭୁବନଂ ପତ୍ତନଂ ସାହସାନା**
**ଦୋଷାଣାଂ ସନ୍ନିଧାନଂ କପଟଶତମୟଂ କ୍ଷେତ୍ରମପ୍ରତ୍ୟୟାନାଂ ।**
**ସ୍ୱର୍ଗଦ୍ୱାରସ୍ୟ ବିଘ୍ନଂ ନରକପୁରମୁଖଂ ସର୍ବ ମାୟା କରଣ୍ଡଂ**
**ସ୍ତ୍ରୀ ଯନ୍ତ୍ରଂ କେନସୃଷ୍ଟଂ ବିଷମମୃତମୟଂ ପ୍ରାଣିଲୋକସ୍ୟ ପାଶଂ । ୪୫ ।**

ଗଢ଼ିଲା କିଏ ସତେ ଏ ନାରୀଜାତି
ପୁରୁଷ ମନେ ନିତି ବୁହାଏ ତାତି,
ସେ ପୁଣି ପୁରୁଷର ପତନ ଦ୍ୱାର
ଗଢ଼ିଲା ତାକୁ ଯିଏ, ଶତ ଧିକ୍କାର ।

ସଂଶୟର ଆବର୍ତ୍ତ ଅଟଇ ସିଏ
ଅବିନୟର ଭରା ଭବନ ଟିଏ,
ସେ ପୁଣି ସାହସର ଅଟଇ ଦ୍ୱାର
ସମସ୍ତ ଦୋଷଗୁଣ, ସେ ଗନ୍ତାଘର ।

ଅବିଶ୍ୱାସର ମୂଳ ଅଟଇ ନାରୀ
କପଟ ଜାଲ ସିଏ ଥାଏ ବିସ୍ତାରି,
ସ୍ୱର୍ଗପଥର ଅଟେ ବିଘ୍ନକାରିଣୀ
ନରକ ଦ୍ୱାର ଅଟେ, ସେ ମାୟାବିନୀ ।

ମୋହ ମୋହନମୂର୍ତ୍ତି ଅଟଇ ନାରୀ
ସମ୍ମୋହିତ କରେ ସେ ମନ ସବୁରି,
ଅମୃତ ହଳାହଳ ଭରି ଅନ୍ତରେ
ପରଷି ଥାଏ ସିଏ ଜଗତ ନରେ
ଧନ୍ୟ ସେ ନାରୀ,
ଅମୃତମୟୀ ପୁଣି ସେ ବିଷବାରି ।

ନୋ ସତ୍ୟେନ ମୃଗାଙ୍କ ଏଷ ବଦନୀଭୂତୋ ନ ଚେନ୍ଦୀବର -
ଦ୍ୱନ୍ଦଂ ଲୋଚନତାଂ ଗତଂ ନ କନକୈରପ୍ୟଙ୍ଗ ଯଷ୍ଟିଃ କୃତା,
କିନ୍ତ୍ୱେବଂ କବିଭିଃ ପ୍ରତାରିତମନାସ୍ତତ୍ତ୍ୱଂ ବିଜାନନ୍ନପି
ତ୍ୱଙ୍‌ମାଂସାସ୍ଥିମୟଂ ବପୁର୍ମୃଗଦୃଶାଂ ମନ୍ଦୋଜନଃ ସେବତେ । ୪୬ ।

ଏକି ଅଦ୍ଭୁତ,
କବି ବର୍ଣ୍ଣନାକୁ ମଣୁଛି ସତ !

ସତେ କି ନାରୀର ମୁଖ, 'ଚନ୍ଦ୍ରମା'
ସତେ କି ଅଟେ ସେ, 'ପଦ୍ମଲୋଚନା',
ମେଦ, ମାଂସ, ହାଡ ଶରୀର ସତ୍ତା
ସତେକି ତା' ଦେହ, ସୁବର୍ଣ୍ଣଲତା ।

ଏ' ସବୁ, କବିର କଳ୍ପନା ଖାଲି,
ଚଟୁଳ ବର୍ଣ୍ଣନେ ମନକୁ ଟାଳି,
କବି ପ୍ରତାରଣା ଅଟଇ ତାହା
ନାରୀକୁ କରିଛି ଭୂଷିତ ଯାହା -
ଭୂଷଣ ଦେଇ,
ମିଥ୍ୟା ପଛେ ନର ହେଉଛି ବାଇ ।

ମେଦ ମାଂସ ଭରା ଶରୀର ସେବା
କରୁଛି ମଣିଷ ସେ ରାତ୍ର ଦିବା ।
ଅଳୀକ ଅସାର ଅସତ୍ୟ ଯାହା
ସମ୍ଭୋଗ ନାମରେ ସେବୁଛି ତାହା -
ହୋଇ ପ୍ରମତ୍ତ,
କି କହିବା କବି ଛବି ବିଚିତ୍ର ।

ଲୀଳାବତୀନାଂ ସହଜା ବିଳାସାସ୍ତଏବ ମୂଢ଼ସ୍ୟ ହୃଦି ସ୍ଫୁରନ୍ତି
ରାଗୋନଳିନ୍ୟାହି ନିସର୍ଗସିଦ୍ଧସ୍ତତ୍ର ଭ୍ରମତ୍ୟେବ ବୃଥା ଷଡଂଘ୍ରିଃ ।୪୭ ।

ନାରୀର ଭ୍ରୂଭଙ୍ଗୀ ଅବା ଅଙ୍ଗଭଙ୍ଗୀ
ଅଟଇ ସ୍ୱଭାବ ଜାତ,
କାହାପାଇଁ ଏହା ନଅଟେ ଉଦ୍ଦିଷ୍ଟ
କା' ପାଇଁ ବା ଅଭିପ୍ରେତ ।
ନ ଭାବ, ତା' ତୁମ ପାଇଁ,
ବୃଥାରେ ନହୁଅ ବାଇ ।

ଭ୍ରମରର ମନ ଆକର୍ଷଣ ପାଇଁ
ନୁହେଁ ପଦ୍ମ ଅରୁଣିମା
ଏହା ଅଟେ ତା'ର ନୈସର୍ଗିକ ଶୋଭା
ବୃଥା ଭ୍ରମେ ଅଳି ସିନା ।
ନୁହେଁ ଭୃଙ୍ଗ ବିଳାସିନୀ
ଶୋଭାମୟୀ ସରୋଜିନୀ ।

ଯଦେତତ୍ପୂର୍ଣ୍ଣେନ୍ଦୁ ଦ୍ୟୁତିହର ମୁଦାରାକୃତି ପରଂ
ମୁଖାବ୍ଜଂ ତନ୍ୱଙ୍ଗ୍ୟାଃ କିଳ ବସତି ଯତ୍ରାଧର ମଧୁ ।
ଇଦଂ ତତ୍କିମ୍ପାକଦ୍ରୁ ମଫଳମିଦାନୀ ମତିରସଂ
ବ୍ୟତୀତେଽସ୍ମିନ୍ କାଳେ ବିଷମିବ ଭବିଷ୍ୟତ୍ୟସୁଖଦଂ । ୪୮ ।

ତାରୁଣ୍ୟ ଚର୍ଚ୍ଚିତ ନବ ତରୁଣୀର
ଚନ୍ଦ୍ରାନନ ଶିରୀ ଶୋଭା,
ଅଟଇ ଅଳୀକ ଅସାର ନଶ୍ୱର
ହେଉ ଯେତେ ମନଲୋଭା ।

ସୁରମ୍ୟ ଅଧର, ପକ୍ୱରମ୍ଭା ଫଳ -
ଠାରୁ ହେଲେ ବି ମଧୁର,
ସେ ମଧୁ ରସର ମଧୁ ମାଦକତା
ହେଲେ ବି ଅମୃତତର -
ଯଉବନ ହେଲେ ଗତ,
ସେ ଅମୃତ ସୁଧା ମଧୁ ମାଦକତା
ବିଷେ ହୁଏ ପରିଣତ ।

**ଉନ୍ମିଲନ୍ତି ବଳୀତରଙ୍ଗନିଳୟା ପ୍ରୋତ୍ତୁଙ୍ଗପୀନସ୍ତନ**
**ଦ୍ୱନ୍ଦେନୋଦ୍ଧୃତ ଚକ୍ରବାକ ଯୁଗଳା ବକ୍ତ୍ରାମ୍ବୁଜୋଦ୍ଭାସିନୀ ।**
**କାନ୍ତାକାରଧରା ନଦୀୟମଭିତଃ କ୍ରୂରାତ୍ର ନାପେକ୍ଷତେ**
**ସଂସାରାର୍ଣ୍ଣବମଜ୍ଜନଂ ଯଦି ତଦା ଦୂରେଣ ସଂତ୍ୟଜ୍ୟତାଂ । ୪୯ ।**

ତନ୍ୱୀର ତ୍ରିବଳି କି ମନୋହର
ସୁଶୋଭିତ ବକ୍ଷଚକ୍ର ଯୁଗଳ,
ଉଭାସିତ କରେ ମୁଖ ଚନ୍ଦ୍ରମା
ସୁଧା ର ଭଣ୍ଡାର, ସେ ମନୋରମା ।

ବହୁଛି ଶରୀରେ ସୌନ୍ଦର୍ଯ୍ୟ ନଈ
ସ୍ରୋତମୟୀ ସେ'ତ କି ଶୋଭାମୟୀ !
ତା' ମୁଖେ ପଡ଼ିଲେ ନାହିଁ ନିସ୍ତାର
ଉଜାଡ଼ି ଦିଏ ସେ ସୁଖ ସଂସାର ।

ଅତ୍ୟନ୍ତ ପ୍ରଖର ଅଟେ ତା ଗତି
କ୍ରୂରମୟୀ ସେତ ତା' କ୍ରୂର ମତି,
ଭବସିନ୍ଧୁ ଯଦି ହୋଇବୁ ପାର
ଦୂରେ ରହ, ହୋଇ ତା'ଠାରୁ ଦୂର ।
ନାରୀର ମତି
ବିଚିତ୍ର ଅଟଇ ତା' ରୀତି ନୀତି ।

**ଜଳ୍ପନ୍ତି ସାର୍ଥମନ୍ୟେନ ପଶ୍ୟନ୍ତ୍ୟନ୍ୟଂ ସବିଭ୍ରମାଃ**
**ହୃଦୟେ ଚିନ୍ତୟନ୍ତ୍ୟନ୍ୟଂ ପ୍ରିୟଃ କୋ ନାମ ଯୋଷିତାଂ । ୫୦ ।**

ଯୁବତୀ ମନ
ପ୍ରୀତି ପ୍ରଣୟର ପଦ୍ମବନ ।
କଳି ହୁଏ ନାହିଁ ମନ ତାହାର
କେତେ ଆଲୋକିତ କେତେ ଅନ୍ଧାର ।

ମଧୁର ବଚନେ ଆଳାପ କରେ ସେ
ଜଣକ ସାଥେ,
ଆଉ ଜଣକୁ ସେ ହୃଦେ ଭେଟୁଥାଏ
ମୁଗ୍ଧ ଚିତ୍ତେ ।
ମନରେ ମନରେ ବିଳାସ ରଚି,
ଅନ୍ତର ତା'ର ମାଦକିତ କରେ
ତା' ବୁକୁବେଳାରେ ପ୍ରଣୟବୀଚି ।

**ଅପସର ସଖେ ଦୂରାଦସ୍ମାତ୍କଟାକ୍ଷ ବିଷାନଳାତ୍**
**ପ୍ରକୃତିବିଷମାଦୋଷିର୍ସପାଦ୍ ବିଳାସ ଫଣାଭୃତଃ ।**
**ଇତରଫଣିନା ଦଷ୍ଟାଃ ଶକ୍ୟଶ୍ଚିକିତ୍ସି ତୁମୌଷଧୈ -**
**ଷ୍ଚତୁରାବନିତାଭୋଗିଗ୍ରସ୍ତଂ ତ୍ୟଜନ୍ତି ହି ମନ୍ତ୍ରିଣଃ । ୫୧ ।**

ନାରୀର କଟାକ୍ଷ ହଳାହଳ ଭରା
ଅପସର ସଖା ତା'ଠାରୁ ଦୂରେ,
ପ୍ରକୃତି ତାହାର ଅଟଇ ପ୍ରଚଣ୍ଡ
ଫଣିନୀ ସାଜେ ସେ ବିଳାସ ପୁରେ ।

ପ୍ରକୃତ ଉରଗ କରିଲେ ଦଂଶନ
ମହୌଷଧି ବଳେ ଶାନ୍ତ ତାହା,
ଭୋଗବିଳାସିନୀ ଚତୁରୀ ରମଣୀ
ଦଂଶନ କଲେ କେ ନୁହେଁ ସାହା ।
ପ୍ରୀତି ଗରଳ ତା' ପ୍ରୀତି ଗରଳ
ମାନ୍ତ୍ରିକର ମନ୍ତ୍ର ହୁଏ ବିଫଳ -
ତା' ହୁଏ ବିଫଳ ।

**ବିସ୍ତାରିତଂ ମକରକେତନଧୀବରେଣ**
**ସ୍ତ୍ରୀସଂଜ୍ଞିତଂ ବଡ଼ିଶମତ୍ର ଭବାମ୍ବୁରା ଶୌ ।**
**ଯେନାଚିରାତ୍ତଦଧରାମିଷ ଲୋଲମର୍ତ୍ତ୍ୟ -**
**ମତ୍ସ୍ୟାନ୍ ବିକୃଷ୍ୟ ବିପଚତ୍ୟନୁରାଗ ବହ୍ନୌ । ୫୨ ।**

ବିସ୍ତାରିତ ଅଟେ ଭାବ ବାରିଧି
କନ୍ଦର୍ପ ପାଳଇ ଧିବର ବିଧି,
ନାରୀକୁ କରିସେ ବନଶି କଣ୍ଟା
ପକାଇ ବସିଛି ସଳଖି ଅଣ୍ଟା ।

ପ୍ରଲୋଭିତ ହୋଇ ଯେ ନବଯୁବା
ଅଧର ଆମିଷ ଭକ୍ଷିବ ଅବା,
ଟାଣିବ ବନଶୀ ପ୍ରୀତିମୟୀକୁ
ଅନୁରାଗ ରାଗେ ସେ ବୁଡ଼ିବାକୁ ।

ବିରହ ବହ୍ନିରେ ହେବ ଦହନ
ଏ' ତ କନ୍ଦର୍ପର ପ୍ରୀତି ପାର୍ବଣ ।

କାମିନୀକାୟକାନ୍ତାରେ କୁଚପର୍ବତ ଦୁର୍ଗମେ
ମା ସଞ୍ଚର ମନଃପାନ୍ଥ ତତ୍ରାସ୍ତେ ସ୍ମରତସ୍କରଃ । ୫୩ ।

କାମିନୀର କାୟା ଘନବନସ୍ତ ଭିତରେ
ନଭ୍ରମ, ଭ୍ରମରେ ସଖା କେବେ ବିକଳରେ,
ନହୁଅ ବିହ୍ୱଳ ଦେଖି ତା'ବୁକୁ ବନାନୀ
ଦୁର୍ଗମ ଅଟଇ କୁଚ ପର୍ବତ ତା' ବେନି ।

ଲୁଚିଛି ସେଠାରେ ସଖା, ସେ ସ୍ମର ତସ୍କର
ସମ୍ମୋହିତ କରିଦେବ ହୃଦୟ ଅନ୍ତର,
ଥରେ ବନ୍ଧୁ ହୋଇଗଲେ ବଶ
ଏଡାଇ ପାରିବ ନାହିଁ ସ୍ମର ଶକ୍ତପାଶ ।

ବ୍ୟାଦୀର୍ଘେଣ ଚଳେନ ବକ୍ରଗତିନା ତେଜସ୍ୱିନା ଭୋଗିନା
ନୀଳାବ୍ଜଦ୍ୟୁତିନାହିନା ପରମହଂ ଦଷ୍ଟୋ ନ ତଚ୍ଚକ୍ଷୁଷା ।
ଦଷ୍ଟଃ ସନ୍ତି ଚିକିତ୍ସକା ଦିଶି ଦିଶି ପ୍ରାୟେଣ ଧର୍ମାର୍ଥିନୋ
ମୁଗ୍ଧାକ୍ଷି କ୍ଷଣ ବିକ୍ଷିତସ୍ୟ ନ ହି ମେ ବୈଦ୍ୟୋ ନ ଚାପ୍ୟୌଷଧଂ ।୫୪ ।

ଦଂଶିଲେ ଦଂଶୁପଛେ ସେ କାଳ ସର୍ପ
ନୀଳକାନ୍ତି ସୁଦୀର୍ଘ ଅତୁଟ ଦର୍ପ,
ଅଛି ଔଷଧ ବିଷ ହରଣ ପାଇଁ
ଅଛନ୍ତି ବିଷହାରୀ ମନ୍ତ୍ର ଗୋସାଇଁ ।

କିନ୍ତୁ ବାମା କଟାକ୍ଷ ଦଂଶନ ଜ୍ୱାଳା
ଅସ୍ଥିର କରିଥାଏ ଜୀବନ ସାରା,
ପାରନ୍ତି ନାହିଁ କେହି ହରି ତା ବିଷ
ଔଷଧ କିମ୍ୱା ସିଦ୍ଧ ବୈଦ୍ୟ ବିଶେଷ
ତା' ଭୟଙ୍କର,
ସଦା କରେ ଅସ୍ଥିର ।

ଇହ ହି ମଧୁର ଗୀତଂ ନୃତ୍ୟମେତଦ୍ରସୋଽୟଂ
ସ୍ଫୁରତି ପରିମଳୋଽସୌ ସ୍ପର୍ଶ ଏଷସ୍ତନାନାଂ ।
ଇତିହତ ପରମାର୍ଥୈ ରିନ୍ଦ୍ରିୟୈର୍ଭ୍ରାମ୍ୟମାଣଃ
ସ୍ୱହିତ କରଣ ଧୂର୍ତ୍ତୈଃ ପଞ୍ଚଭିର୍ବଞ୍ଚିତୋଽସ୍ମୀ ।୫୫ ।

ତା'ରୂପ ସୁନ୍ଦର, ତା' ଗୀତ ମଧୁର
ତା' ନୃତ୍ୟ ହୃଦୟଗ୍ରାହୀ,
ତା'ବାସେ ବିହ୍ୱଳ ଅଟଇ ପରାଣ
ସ୍ପର୍ଶ ଅଟେ ମୋହମୟୀ ।
ତା'ର ପୀନ ପୟୋଧର,
ଲୋଭନ ଶୋଭନ ପ୍ରୀତି ବିମୋହନ
କରଇ ପ୍ରାଣ ଅସ୍ଥିର ।
ନୀତି ଧର୍ମଠାରୁ ଦୂରେ -
ରଖି ମଣିଷକୁ, କରଇ ବିଭ୍ରମ
ପ୍ରମତ୍ତ କରି ଶୃଙ୍ଗାରେ ।

ନ ଗମ୍ୟୋ ମନ୍ତ୍ରାଣାଂ ନ ଚ ଭବତି ଭୈଷଜ୍ୟବିଷୟୋ
ନ ଚାପି ପ୍ରଧ୍ୱଂସଂ ବ୍ରଜତି ବିବିଧୈଃ ଶାନ୍ତିକଶତୈଃ ।
ଭ୍ରମାବେଶାଦଙ୍ଗେ କମପି ବିଦଧଦ୍ଭଙ୍ଗମସକୃ
ସ୍ମରାପସ୍ମାରୋୟଂ ଭ୍ରମୟତି ଦୃଶଂ ଘୂର୍ଣ୍ଣୟତି ଚ ।୫୬ ।

ଅପସ୍ମାର ପରି ଦୁସାଧ ଅଟେ ସ୍ମର ପୀଡନା
ଔଷଧ, ଏ'ପୀଡା ପାରେନା କରି ଯନ୍ତ୍ରଣା ଊଣା ।
ସ୍ମର 'ଅପସ୍ମାର' ବେଦନା ଅଟେ ଅତି ଜଟିଳ
ଶାନ୍ତି ଉପଚାର ମନ୍ତ୍ରରେ ପୀଡା ନହୁଏ ଦୂର ।
ନୟନ ଘୂର୍ଣ୍ଣିତ ହୁଅଇ ଚିତ୍ତ ହୁଏ ବିଭ୍ରମ
ଚକ୍ରପରି ଏହା ଘୂରାଏ କାମ ପୀଡିତ ମନ ।
ରକ୍ଷା ପାଇବାକୁ କଷଣୁ ନାହିଁ ଉପାୟ କିଛି
ସବୁଠାରୁ ଭଲ ମନରୁ ସ୍ମରେ ଦେଲେ ମୁରୁଛି ।

କାତ୍ୟନ୍ଧାୟ ଚ ଦୁର୍ମ୍ମୁଖାୟଚ ଜରାଜୀର୍ଣ୍ଣାଖିଳାଙ୍ଗାୟଚ
ଗ୍ରାମୀଣାୟଚ ଦୁଷ୍କୁଳାୟଚ ଗଳକୁଷ୍ଠାଭିଭୂତାୟଚ ।
ଯଚ୍ଛନ୍ତୀଷ୍ଣୁ ମନୋହରଂ ନିଜବପୁର୍ଲକ୍ଷ୍ମୀଲବଶ୍ରଦ୍ଧୟା
ପଣ୍ୟସ୍ତ୍ରୀଷୁ ବିବେକ କଳ୍ପ ଲତିକା ଶସ୍ତ୍ରୀଷୁ ରଜ୍ୟେତ କଃ ।୫୭ ।

ଜନ୍ମରୁ ଅନ୍ଧ ଅବା ଦୁମୁର୍ଖ ଜନ
ଅଟେ ବା ଜରାଜୀର୍ଣ୍ଣ ତା' ଅଙ୍ଗ କ୍ଷୀଣ,
ହୋଇଥାଉ ବା ନୀଚ, ଦୁଷ୍କୁଳେ ଜାତ
ଶରୀର ରୋଗାକ୍ରାନ୍ତ କୁଷ୍ଠ ଗଳିତ ।
ବାରାଙ୍ଗନାର ତିଳେ ନଥାଏ ଭୟ
ବରାଙ୍ଗୀ ହେଲେ ବି, ତା' ଧନରେ ଲୟ,
ବିବେକ କଳ୍ପଲତା, କାମ କୁଠାରେ -
ଛେଦି, ଅରପେ ରୂପଲକ୍ଷ୍ମୀ ଅପରେ ।

ପୁଣ୍ୟ ଶରୀର ତାର କରେ ସେ ପଣ୍ୟ
ସେ'କି ମଣିଷ ପଣେ ସଂସାରେ ଗଣ୍ୟ !
ସେ ନାରୀଠାରେ,
ନୁହନ୍ତୁ ଅନୁରକ୍ତ ବିବୁଧ ନରେ ।

ବେଶ୍ୟାସୌ ମଦନଜ୍ୱାଳା ରୂପେନ୍ଧନ ବିବର୍ଦ୍ଧିତା
କାମିଭିର୍ଯତ୍ର ହୂୟନ୍ତେ ଯୌବନାନି ଧନାନି ଚ । ୫୮ ।

ନିଜର ସୌନ୍ଦର୍ଯ୍ୟ ଶୋଭା ରୂପଶିରୀ
କାମ ହୋମାନଳେ ଯୁକ୍ତ କାଷ୍ଠ ପରି,
ବିଟପୀ ରମଣୀ ଜାଳେ କାମାନଳ
ଆହୁତି ଢ଼ାଳନ୍ତି ବିଟପ ସକଳ ।
ଧନ, ମାନ ମନ ପଦ ଯଉବନ
କାମାନଳ କ୍ଷୁଧା କରଇ ଦହନ ।

କଶ୍ଚୁମ୍ବତି କୁଳପୁରୁଷୋ ବେଶ୍ୟାଧରପଲ୍ଲବଂ ମନୋଜ୍ଞମପି
ଚାର ଚୋର ଚେଟକ ବିଟ ନଟ ନିଷ୍ଠୀବନଶରାବଂ । ୫୯ ।

ବିଟପୀ ନାରୀର ପଲ୍ଲବ ଅଧର
ନ ଚୁମ୍ବନ୍ତି କୁଳପୁରୁଷ ପ୍ରବର ।

ଯେତେ ମନୋରମ ହେଲେ ହେଉ ପଛେ
ଯେ ବିଜ୍ଞ ବିବେକୀ କେବେ ତା' ନଇଛେ,
ଚୋର, ଚାର, ନଟ, ବିଟର ଲାଳସା
କରେ ପରିପୂର୍ଣ୍ଣ ସେ ବିଟପୀ ଯୋଷା ।

ମଧୁତିଷ୍ଠତି ବାଚି ଯୋଷିତାଂ ହୃଦି ହଳାହଳମେବ କେବଳଂ
ନି ପୀୟତେ ଅଧରୋ ହୃଦୟଂ ମୁଷ୍ଟିଭିରେବ ତାଡ଼୍ୟତେ । ୬୦ ।

ବଚନ ମଧୁବୋଳା ହୃଦୟେ ହଳାହଳ
ଭରି ରହିଛି ଯୋଷାଙ୍କର,
ତେଣୁ ପୁରୁଷଗଣ ଅଧର ମଧୁପାନ
କରି ପୀଡନ୍ତି ପୟୋଧର ।
ଶୃଙ୍ଗାର ପୀଡାମୟୀ ନାରୀ,
ସେ ପୀଡା ପ୍ରଦାୟିନୀ, ସୁରତ ବିଳାସିନୀ
କାମ କାମନା ହୃଦେ ଢାଳି ।

•

ନାରୀ ନିନ୍ଦା ସମାପ୍ତ

# ହର୍ଷବିଷାଦ ରାଗ

ଧନ୍ୟାସ୍ତ ଏବ ଧବଳାୟତ ଲୋଚନାନାଂ
ତାରୁଣ୍ୟଦର୍ପ ଘନପୀନ ପୟୋଧରାଣାଂ ।
କ୍ଷାମୋଦରପରି ଲସତ୍ତ୍ରି ବଳୀଲତାନାଂ
ଦୃଷ୍ଟ୍ୱାକୃତିଂ ବିକୃତିମେତି ମନୋ ନ ଯୋଷାଂ । ୬୧ ।

ସେ ଅଟେ ସୁରମ୍ୟା ମୁଗ୍ଧା ମନୋରମା
ଆୟତ୍ତ ନୟନା ନାରୀ,
ତାରୁଣ୍ୟ ଦର୍ପିତା ଗୌର ଘନ ପୀନ
ପୟୋଧରା କୃଶୋଦରୀ ।

ତ୍ରିବଳି ଶୋଭିତା ନେତ୍ର ବିମୋହିତା
ଲାବଣ୍ୟ ଲତିକା ଟିଏ,
ତା'ରୂପ ଦର୍ଶନେ ମନରେ ବିକାର
ନ ଉପୁଜେ ଯା'ର ସିଏ -
ଧନ୍ୟ ଅଟେ ଭବେ ନର,
ଦୃଢ଼ ଚିତ୍ତ ଅଟେ ତା'ର ।

ବାଳେ ଲୀଳାମୁକୁଳିତମସୀ ମନ୍ଥରା ଦୃଷ୍ଟିପାତାଃ
କିଂ କ୍ଷିପ୍ୟନ୍ତେ ବିରମ ବିରମ ବ୍ୟର୍ଥ ଏଷ ଶ୍ରମସ୍ତେ ।
ସମ୍ପ୍ରତ୍ୟନ୍ୟେ ବୟମୁପରତଂ ବାଲ୍ୟମାସ୍ଥା ବନାନ୍ତେ
କ୍ଷୀଣୋ ମୋହସ୍ତୃଣମିବ ଜଗଜ୍ଜାଳ ମାଲୋକୟାମଃ । ୬୨ ।

ଆଗୋ ଲୀଳା ବିଳାସିନୀ ବାଳା !
ଅଳସ କକ୍ଷାକ୍ଷ ତୁମ -
ଅଟଇ ନିଷ୍ଫଳା ।
ବିରତ ହୁଅଗୋ ତୁମେ ନୟନ ବିଳାସୁ
ବ୍ୟର୍ଥ୍ୟ ତୁମ ଅଳୀକ ପ୍ରୟାସୁ ।

ମୋତେ ତୁମେ ପାରିବନି ମୋହଗ୍ରସ୍ତ କରି
ବନସ୍ତ ମଧ୍ୟକୁ ଯାଇ -
ସମ୍ମୋହନ ଦେବି ମୁଁ ସଂହାରି ।
ଏ ବିଶ୍ୱକୁ ତୃଣ ତୁଲ୍ୟ ନକର ଗୋ ଗଣା !
ତୁମର ଅସ୍ତିତ୍ୱ କାଇଁ ଏ ଜଗତ ବିନା ! !

ଇୟଂ ବାଲା ମାଂ ପ୍ରତ୍ୟନବରତମିନ୍ଦୀ ବରଦଳ
ପ୍ରଭା ଚୋରଂ ଚକ୍ଷୁଃ କ୍ଷିପତି କିମଭିପ୍ରେତ ମନୟା ।
ଗତୋ ମୋହୋଽସ୍ମାକଂ ସ୍ମରଶବର ବାଣ ବ୍ୟତିକର -
ଜ୍ୱରଜ୍ୱାଳା ଶାନ୍ତା ତଦପି ନ ବରାକୀ ବିରମତୀ । ୬୩ ।

ନୀଳ ଉତ୍ପଳ ଜିଣା କଟାକ୍ଷ ତା'ର
କିମ୍ପାଇ ନିକ୍ଷେପଇ ସେ ସ୍ମର ଶର -
ଉପରେ ମମ,
ମୋ ସ୍ମର ବ୍ୟାଧି ମୋହ ହେଲାଣି ଶମ ।

ସେ ବାଳା ଚୋଳି ଚୋରା ଚୋରା ଚାହାଣି
କାହିଁକି ମନ ମୋର ନେଉଛି ଟାଣି !
ନୁହେଁ ବିରତ,
ତା' ନେତ୍ର ଲୀଳା କିମ୍ପା ରଚେ ସତତ ? ?

କିଂ କନ୍ଦର୍ପଶରଂ କଦର୍ଥୟସି ରେ କୋଦଣ୍ଡଟଙ୍କାରିତଂ
ରେ ରେ କୋକିଳ କୋମଳଂ କଳରବଂ କିମ୍ବା ବୃଥା ଜଳ୍ପସି ।
ମୁଗ୍ଧେ ସ୍ନିଗ୍ଧ ବିଦଗ୍ଧ ଚାରୁମଧୁରୈର୍ଲୋକୈଃ କଟକ୍ଷୈରଳଂ
ଚେତଶ୍ଚୁମ୍ବିତ ଚନ୍ଦ୍ରଚୂଡ ଚରଣ ଧ୍ୟାନାମୃତଂ ବର୍ତ୍ତତେ । ୬୪ ।

ଶିବପଦ ପୂଜନେ ମୁଗ୍ଧ ମୋ ମନ
ଶିବଙ୍କ ଆରାଧନେ ସଦା ଧିଆନ ।
ମୁଁତ ଶିବ ସେବକ,
ଅଟନ୍ତି ସିଏ କନ୍ଦର୍ପ ବିନାଶକ ।

ତଥାପି ବାଳାକିଆଁ ନିକ୍ଷେପୁ ଶର
ବାର ବାର ମୋ'ପରେ, କନ୍ଦର୍ପଙ୍କର,
ରେ ପିକ ମଧୁସ୍ୱର ତୋଳନା ତୁହି
ଶୃଙ୍ଗାରୀ ନାରୀକୁ ତୁ ଦିଅନା ଦହି ।

ମାରିଲେ ମାରୁ ତା'ର କନ୍ଦର୍ପ ଶର
ନିକ୍ଷେପୁ କଟାକ୍ଷ ତା' ସେ ବାର ବାର,
ନାହିଁ ମୋ ଭୟ
ଚନ୍ଦ୍ରଚୂଡ ପୂଜନେ ଅଛି ମୋ ଲୟ ।

**ବିରହେଽପି ସଙ୍ଗମଃ ଖଲୁ ପରସ୍ପରସଙ୍ଗତଂ ମନୋଯେଷାଂ**
**ହୃଦୟମପି ବିଘଟିତଂ ଚେତ୍ସଙ୍ଗୋ ବିରହଂ ବିଶେଷୟତି । ୬୫ ।**

ଅନୁରାଗ ବନ୍ଧନ,
କରଇ ମୋହାଶକ୍ତ ଦୁଇଟି ମନ ।
ଉଭୟେ ଉଭୟଙ୍କୁ ଛାଡିବା ପାଇଁ
କେବେହେଁ ମନସିଏ କରନ୍ତି ନାହିଁ,
ତଥାପି ଆସେ ଯେବେ ବିଦାୟ ବେଳ
ନଯିବା ପାଇଁ ହୁଏ ମନ ବିକଳ ।

ମିଳନ ମଉଛବ ଯାଇଛି ସରି
ବୈରାଗ୍ୟ ବିଚ୍ଛେଦରେ ଯାଇଛିଭରି,
ବିରହ ଜର୍ଜରିତ ଅଟଇ ମନ
ମିଳଇ ଖାଲି ଅତୃପ୍ତିର କଷଣ ।

କିଂ ଗତେନ ଯଦି ସା ନ ଜୀବତି ପ୍ରାଣିତି ପ୍ରିୟତମା ତଥାପି କିଂ
ଇତ୍ୟୁଦୀକ୍ଷ ନବ ମେଘମାଳିକାଂ ନ ପ୍ରୟାତି ପଥିକଃ ସ୍ୱମନ୍ଦିରଂ । ୬୬ ।

ଆଦ୍ୟ ଆଷାଢ଼ ନେଇ ଘନ ସମ୍ଭାର
ଆକାଶ ବୁକେ ଖେଳେ ମେଘ ମଲ୍ଲାର ।
ତା' ଦେଖି ବ୍ୟଥାହତ ପ୍ରବାସୀ ପ୍ରିୟ
ଭାବୁଛି ପ୍ରିୟା ତା'ର କି ଦୟନୀୟ -
ଦଶା ସେ ଭୋଗୁଥିବ ନବ ଯୁବତୀ,
ସହି ପାରି ନଥିବ ବିରହ ତାତି ।

ତା' ପ୍ରାଣ ହାରିଥିବ, ଥିବ ବା ଶୋକେ
ଚାହିଁ ନଥିବ ପଥ ପ୍ରେମ ପୁଲକେ
କି ଲାଭ ଯାଇ,
କିପରି ନ ଫେରିବ ପ୍ରବାସୀ ହୋଇ !!

ବିରମତ ବୁଧା ଯୋଷିତ୍‌ସଙ୍ଗାତ୍‌ସୁଖାତ୍ କ୍ଷଣ ଭଙ୍ଗୁରାତ୍
କୁରୁତ କରୁଣା ମୈତ୍ରୀ ପ୍ରଜ୍ଞା ବଧୂଜନ ସଙ୍ଗମ ।
ନଖଲୁ ନରକେ ହାରାକ୍ରାନ୍ତଂ ଘନସ୍ତନମଣ୍ଡଳଂ
ଶରଣ ମଥବା ଶ୍ରୋଣୀବିମ୍ବଂ ରଣନ୍ମଣିମେଖଳଂ ।୬୭ ।

ବିବୁଧ ଜନ !
ସାତ୍ତ୍ୱିକ ଭାବରେ ହୃଦୟକୁ ସଦା
କର ମଣ୍ଡନ ।
ବିଧୁ ବଧୂମୟୀ ନବ ଯୁବତୀ
ଅଙ୍ଗ ସଙ୍ଗ ଲାଭେ ନ ବଳୁ ମତି,
ଗଳାହାର ଯୁକ୍ତ, ତା' ପୟୋଧର
ଅଳୀକ ଅଟେ ତା' ଅଟେ ଅସାର ।

ତା' କଟି ନିତମ୍ବ ମଣିମେଖଳା
ଶୃଙ୍ଗାର ଚର୍ଚ୍ଚିତ ସୁରତ ଲୀଳା,
କ୍ଷଣ ସୁଖପ୍ରଦ ଅଟଇ ଏହା
ନରକ ପୁରକୁ ଫିଟାଏ ରାହା -
ହେ ବିଜ୍ଞଜନ !
ଆଲୋକିତ କର ପ୍ରଜ୍ଞା ଭବନ ।
ତୁଚ୍ଛ ସୁଖଠାରୁ ରହ ହେ ଦୂରେ,
କରୁଣା ପ୍ଳାବିତ ପବିତ୍ର ପୁରେ ।

ଯଦା ଯୋଗାଭ୍ୟାସ ବ୍ୟସନ କୃଶଯୋରାତ୍ମମନସୋ -
ରବିଚ୍ଛିନ୍ନା ମୈତ୍ରୀ ସ୍ଫୁରତି କୃତିନସ୍ତସ୍ୟ କି ମୁତୈଃ ।
ପ୍ରିୟାଣାମାଳା ପୈରଧର ମଧୁ ଭିର୍ବକ୍ତ୍ର ବିଧୁଭିଃ
ସନିଶ୍ୱାସା ମୋଦୈଃ ସକୁଚକଳଶାଶ୍ଲେଷ ସୁରତୈଃ । ୬୮ ।

ଯୋଗାଭ୍ୟାସେ ନିୟୋଜିତ
ଅଟେ ଯା'ର ମନ,
ବିଷୟ ବାସନା ପ୍ରତି
ନଥାଏ ତା' ଧ୍ୟାନ ।
ଅଙ୍ଗନା ଅଧର ପାନେ
ଅଟେ ସେ ବିମୁଖ,
ଆକର୍ଷଣ କରେ ନାହିଁ
ତା'ର ଚନ୍ଦ୍ରମୁଖ ।

ଚାହେଁନା ଆଶ୍ଳେଷିବାକୁ ପୀନ ପୟୋଧର
ହେଉବା ଲାବଣ୍ୟମୟ ବର୍ତ୍ତୁଳ ସୁନ୍ଦର,
ଶୃଙ୍ଗାର ଶ୍ୱାସ ଆଘ୍ରାଣେ ନଥାଏ ପ୍ରୟାସ
ସୁରତ କ୍ରୀଡ଼ା ଉତ୍ସବେ ନଥାଏ ଉଲ୍ଲାସ
ଆତ୍ମ ଦରଶନ,
ପାଇଁ ସଦା ମଗ୍ନ ଥାଏ ମନ ।

ଯଦାସୀଦଜ୍ଞାନଂ ସ୍ମରତିମିର ସଂଚାର ଜନିତଂ
ତଦା ଦୃଷ୍ଟଂ ନାରୀମୟମିଦମଶେଷଂ ଜଗଦିତି ।
ଇଦାନୀମସ୍ମାକଂ ପଟୁତର ବିବେକାଞ୍ଜନଜୁଷାଂ
ସମୀଭୂତା ଦୃଷ୍ଟିସ୍ତ୍ରିଭୁବନମପି ବ୍ରହ୍ମ ମନୁତେ । ୬୯ ।

ମର୍ତ୍ତ୍ୟ ମଣିଷ,
ସର୍ବଦା ଅଟଇ ସେ ମଦନ ବଶ ।

ଅସ୍ଥିର କରେ ମନ କନ୍ଦର୍ପ ବାଣ
ତୁଟାଇ ଦିଏ ତା'ର ମନର ଟାଣ,
ସ୍ମର ପୀଡିତ ନରେ ଘେରେ ଅନ୍ଧାର
କାମ ପୀଡାରୁ ମିଳେ ନାହିଁ ନିସ୍ତାର ।

ଅଜ୍ଞାନ ଅନ୍ଧକାରୁ ରମଣୀଗଣ
ସମ୍ଭବ ହୋଇଥାନ୍ତି ଜଗତେ ପୁଣ,
ଜଗତ ହୋଇଯାଏ ରମଣୀମୟ
କାମ କାମିନୀ କରେ ମନ ଅଥୟ ।

ଜ୍ଞାନ ଅଞ୍ଜନେ ଯଦି ଫିଟଇ ନେତ୍ର
ଦେଖେ ସେ 'ବ୍ରହ୍ମମୟ' ସାରା ଜଗତ,
ଆନନ୍ଦେ ମନ ତା'ର ଉଠଇ ପୂରି
ଦେଖିଲାବୋଲି ବ୍ରହ୍ମ ଆଲୋକପୁରୀ ।
ମର୍ତ୍ତ୍ୟ ମଣିଷ
ଲଭଇ ତା' ମାନସେ ପରମତୋଷ ।

ତାବଦେବ କୃତିନାମପି ସ୍ଫୁରତ୍ୟେଷ ନିର୍ମଳ ବିବେକ ଦୀପକଃ
ଯାବଦେବ ନ କୁରଙ୍ଗଚକ୍ଷୁଷା ତାଡ୍ୟତେ ଚଟୁଳ ଲୋଚନାଞ୍ଚଳୈଃ । ୭୦ ।

ପୁଣ୍ୟଶୀଳ ନର ବିବେକ ପ୍ରଦୀପ
ଜଳୁଥାଏ ଯେତେଦିନ
ଅକଳଙ୍କ ଜ୍ୟୋତି ପ୍ରକଟିତ କରେ
ଶୁଦ୍ଧପୁତ ରହେ ମନ ।

ଯେତେବେଳେ ଚାରୁ ଚଟୁଳ ନୟନା
ତା' ତୀକ୍ଷ୍ଣ କଟାକ୍ଷ ଶରେ,
କ୍ଷତାକ୍ତ କରଇ ପୁରୁଷର ମନ
ମଦନେ ଆସକ୍ତ ନରେ ।
ବିବେକ ହୁଡ଼ଇ ପଥ,
ସମ୍ମୋହନେ ମନ ମଜ୍ଜିଯାଇ ଥାଏ
ଆଚରେ ଅନୀତି ବ୍ରତ ।
ନାରୀଠାରୁ ରହ ଦୂରେ,
ମଦନ ନତୁବା ପୀଡିବ ପରାଣ
ସମ୍ମୋହନ ସୁରେ ସୁରେ ।

ବଚସି ଭବତି ସଙ୍ଗତ୍ୟାଗମୁଦ୍ଦିଶ୍ୟ ବାର୍ତ୍ତା
ଶ୍ରୁତି ମୁଖର ମୁଖାନାଂ କେବଳଂ ପଣ୍ଡିତାନାଂ ।
ଜଘନ ମରୁଣ ରତ୍ନଗ୍ରନ୍ଥି କାଞ୍ଚୀକଳାପଂ
କୁବଳୟ ନୟନାନାଂ କୋବିହାତୁଂ ସମର୍ଥଃ । ୭୧ ।

ବିଜ୍ଞଜନର ଏହା ଅଟେ ଦୃଢ଼ୋକ୍ତି
"ସର୍ବ ଦୁଃଖର ମୂଳ ଅଟେ ଆସକ୍ତି ।
ନାରୀ ଅଟଇ ସଦା ନର୍କର ଦ୍ୱାର
ତା' ସଙ୍ଗ ସୁଖ କର ହେ ! ପରିହାର ।"

ଏ' ଉକ୍ତି ଅଟେ ଖାଲି କଥାର କଥା
ବିବୁଧେ କରିଥାନ୍ତି ନିଜେ ଅନ୍ୟଥା,
କେ ଅଛି ଏ' ସଂସାରେ ଏପରି ଜନ
ତୁଚ୍ଛ ମଣିବ ନାରୀ କୁଚ ଜଘନ ??

କାଞ୍ଚିଦାମେ ଶୋଭିତା ଲାବଣ୍ୟମୟୀ
ତାକୁ ବର୍ଜନ କରି ପାରେ କି କେହି !
ସିଏ ତ ଶ୍ରୋତମୟୀ ବିଶ୍ୱ ଜୀବନେ
ଏ' ସଂସାର ଅସାର ତା' ସ୍ଥିତି ବିନେ !!

ସ ପରପ୍ରତାରକୋଽସୌ ନିନ୍ଦତି ଯୋଽଲୀକପଣ୍ଡିତୋ ଯୁବତୀଃ
ଯସ୍ମାତ୍ତପସୋଽପି ଫଳଂ ସ୍ୱର୍ଗଃ ସ୍ୱର୍ଗେଽପିଚାପ୍ସରସଃ । ୭୨ ।

ଯେ ପଣ୍ଡିତ ନର ମୁଖ ମୁଖର
ନାରୀ ନିନ୍ଦାରେ ତା' ଅଟେ ପ୍ରଖର,
ସେ ପ୍ରତାରକ,
ନାରୀ ଲୋଭୀ, ପୁଣି ନାରୀ ନିନ୍ଦୁକ ।

ସ୍ୱର୍ଗଲାଭ ହୁଏ ତପସ୍ୟା ବଳେ
ତହିଁ ସ୍ୱର୍ଗ ସୁଖ ସମ୍ଭୋଗ ମିଳେ
ସେବନ୍ତି ତହିଁ,
ସୁନ୍ଦରୀ ଅପ୍‌ସରା ସମ୍ଭୋଗ ନଈ ।

ମତ୍ତେଭ କୁମ୍ଭ ଦଳନେ ଭୁବି ସନ୍ତି ଶୂରାଃ
କେଚିତ୍ପ୍ରଚଣ୍ଡ ମୃଗରାଜ ବଧେଽପି ଦକ୍ଷାଃ ।
କିନ୍ତୁ ବ୍ରବୀମି ବଳିନାଂ ପୁରତଃ ପ୍ରସହ୍ୟଂ
କନ୍ଦର୍ପ ଦର୍ପ ଦଳନେ ବିରଳା ମନୁଷ୍ୟାଃ । ୭୩ ।

ସଂସାରେ ଅଛନ୍ତି ଏପରି ବଳୀ
ମତ୍ତ ହସ୍ତୀକୁ ବି ପାରନ୍ତି ଦଳି,
ସିଂହକୁ ପାରନ୍ତି କରି ନିଧନ
ଅସୀମ ଶକ୍ତିରେ ସେ ବଳୀୟାନ୍ ।

କେ'ଟାଳି ପାରିବ କନ୍ଦର୍ପ ବଳ
ସଂସାରେ ଏପରି ବ୍ୟକ୍ତି ବିରଳ,
ତା' ଶକ୍ତି ଧାରା,
କବଳିତ କରେ ସଂସାର ସାରା ।

ସନ୍ମାର୍ଗେ ତାବଦାସ୍ତେ ପ୍ରଭବତି ଚ ନରସ୍ତାବଦେବେନ୍ଦ୍ରିୟାଣାଂ
ଲଜ୍ଜା ତାବଦବିଧତ୍ତେ ବିନୟମପି ସମାଲମ୍ବତେ ତାବଦେବ ।
ଭ୍ରୁ ଚାପା କୃଷ୍ଟାମୁକ୍ତାଃ ଶ୍ରବଣ ପଥଗତା ନୀଳପକ୍ଷ୍ମାଣ ଏତେ,
ଯାବଲ୍ଲୀଳାବତୀନାଂ ହୃଦି ନ ଧୃତିମୁଷୋ ଦୃଷ୍ଟିବାଣାଃ ପତନ୍ତି । ୭୪ ।

ଯେ ଅଟେ ଜିତେନ୍ଦ୍ରିୟ ସାଧୁ ସଜ୍ଜନ
ଜୟ ସେ କରିଥାଏ ଇନ୍ଦ୍ରିୟ ଗଣ,
ସେ କରିଥାଏ ସଦା ସନ୍ମାର୍ଗେ ଗତି
ଲଜ୍ଜା ବିନୟ ଭାବେ ଭରା ତା' ମତି ।

ଯେ ଯାଏ ନାରୀ ତୀକ୍ଷ୍ଣ କଟାକ୍ଷ ବାଣ
ଭ୍ରୂ ଚାପୁ ପ୍ରସାରିତ ତା'ର ଆକର୍ଣ୍ଣ
ବିଦୀର୍ଣ୍ଣ କରି ନାହିଁ, ହୃଦୟ ଭେଦି
ସେ ଯାଏ ରହିଥାଏ ସେ ନୀତିବାଦୀ ।
ଲୀଳାବତୀ ନୟନ ଲୀଳା ଚଞ୍ଚଳ
କରିଲେ ଆମନ୍ତ୍ରଣ, ତା' ମନୋବଳ -
ପଡ଼ଇ ଭାଜି,
ଶୃଙ୍ଗାର ସମାରୋହେ ଯାଏ ସେ ମଜି ।

**ଉନ୍ମତ୍ତ ପ୍ରେମ ସଂରମ୍ଭାଦାରଭନ୍ତେ ଯଦଙ୍ଗନାଃ**
**ତତ୍ର ପ୍ରତ୍ୟୁହମାଧାତୁଂ ବ୍ରହ୍ମାପି ଖଳୁ କାତରଃ । ୭୫ ।**

ପ୍ରୀତି ପ୍ରମୋଦିନୀ ପ୍ରମଦା ଗଣ
କରିଥାନ୍ତି ଯେଉଁ ପ୍ରୀତି ଭିଆଣ,
ମୁଗ୍ଧ ଅନୁରାଗ ନିବିଡ ଚିତ୍ତେ
ବିଳାସ ବାଞ୍ଛିତ ହୃଦୟ ଗତେ
ଅପ୍ରତିହତ,
ବିଧି ନ ପାରଇ କରି ବ୍ୟାହତ ।
ମନକୁ ପାଗଳ କରାଏ ପ୍ରୀତି
ସେଥିରେ ନଥାଏ ଉଜାଣି ଗତି ।

**ତାବନ୍ମହତ୍ତ୍ୱଂ ପାଣ୍ଡିତ୍ୟଂ କୁଲୀନତ୍ୱଂ ବିବେକିତା**
**ଯାବଜ୍ଜ୍ୱଲତି ନାଙ୍ଗେଷୁ ହତଃ ପଞ୍ଚେଷୁପାବକଃ । ୭୬ ।**

କୁଳ କୁଳୀନତା ମହତ୍ତ୍ୱ ପାଣ୍ଡିତ୍ୟ
ବିବେକ ପଣିଆ ଥାଏ -
ଅନାହତ ସଦା, ଅପରିବର୍ତ୍ତିତ
ଅନାବିଳ ଥିବା ଯାଏ ।

କାମ କାମନାର ଅଗ୍ନି ଉଦ୍ଦୀପିତ
ହୋଇଲେ ହୃଦୟେ ଥରେ,
ଦଗ୍ଧ କରିଥାଏ ଶରୀର ଅନ୍ତର
ମନ ହୃଦ ବାରେ ବାରେ ।
ଏ ମହାସତ୍ୟକୁ ଜାଣିଥାନ୍ତି ଯେଉଁ ନର,
ଧନ୍ୟ ଜୀବନ ତାଙ୍କର ।

ଶାସ୍ତ୍ରଜ୍ଞୋଽପି ପ୍ରଗୁଣିତନୟୋଽପ୍ୟାତ୍ତ ବୋଧୋଽପିବାଢ଼
ସଂସାରେଽସ୍ମିନ ଭବତି ବିରଲୋ ଭାଜନଂ ସଦ୍‌ଗତୀନା
ଯେନୈତସ୍ମିନ୍ନି ରୟନଗରଦ୍ୱାର ମୁଦ୍‌ଘାଟୟନ୍ତୀ
ବାମାକ୍ଷୀଣାଂ ଭବତି କୁଟିଳା ଭ୍ରୂଲତା କୁଞ୍ଚିକେବ । ୭୭ ।

କୁଟିଳ ଭ୍ରୂଲତା କଟାକ୍ଷଭାଷା
'କୁଟିଂକା' ସମାନ, ଧରିଛି ଯୋଷା
ହାତରେ ତାର,
ଖୋଲି ଦେବ ବୋଲି ନରକ ଦ୍ୱାର ।

ଯେ ଯେତେ ହୁଅନ୍ତୁ ବିଜ୍ଞ ପଣ୍ଡିତ
ନୀତିଜ୍ଞ ବିନୟୀ ସେ ଜ୍ଞାନବନ୍ତ,
କେ ଏଡ଼ି ପାରିଛି କନ୍ଦର୍ପ ପୀଡା
କାହାକୁ ମୋହିନି, ମୋହିନୀ ବ୍ରୀଡା !

ମୋକ୍ଷ ପ୍ରାପ୍ତି ପାଇଁ କେ ଅଟେ ଯୋଗ୍ୟ
ସମସ୍ତେ ତ ଭୋଗୀ, ସମସ୍ତେ ଭୋଗ୍ୟ,
କେ ଅଟେ ମୁକ୍ତ !
କାହାକୁ ମିଳିବ ମୁକ୍ତିର ପଥ ।
ଆତ୍ମଜ୍ଞାନୀ ନର ଲଭେ ସଦ୍‌ଗତି
ବିରଳ ଅଟନ୍ତି ସେ ପରି ବ୍ୟକ୍ତି ।

କୃଶଃ କାଣଃ ଖଞ୍ଜଃ ଶ୍ରବଣ ରହିତଃ ପୁଚ୍ଛବିକଳୋ
ବ୍ରଣୀପୂୟକ୍ଳିନଃ କୃମିକୁଳଶତୈରାବୃତ ତନୁଃ ।
କ୍ଷୁଧା କ୍ଷାମୋ ଜୀର୍ଣ୍ଣଃ ପିଠରକ କପାଳାର୍ପିତ ଗଳଃ
ଶୁନୀମନ୍ୱେତି ଶ୍ୱାହତମପି ଚ ହନ୍ତ୍ୟେବ ମଦନଃ । ୭୮ ।

ଧନ୍ୟ କନ୍ଦର୍ପ ତା'ର ଶକ୍ତି ଅପାର
କରିଛି କବଳିତ ବିଶ୍ୱ ସଂସାର,
ତା' ବାଣେ ପ୍ରପୀଡିତ ମାନବ ଜାତି
ସହନ୍ତି ପଶୁପକ୍ଷୀ ସେ ସ୍ମର ତାତି ।

ଜରାଗ୍ରସ୍ତ ଯେ ଶ୍ୱାନ ଲୋଳିତ ଚର୍ମ
ଗଳିତ ନଖ ଦନ୍ତ ଶ୍ରବଣ ହୀନ,
କ୍ଷୀଣ ଅଟଇ ଦୃଷ୍ଟି ଶକ୍ତି ତାହାର
ନପାରେ ଭ୍ରମି ଖଞ୍ଜ ଗୋଡରେ ତା'ର ।

କ୍ଷତ ଭରା ଶରୀର ପୂଜରେ ପୂର୍ଣ୍ଣ
କୃମିରେ ସାଲୁବାଲୁ, ଅଟେ ସେ ଶୀର୍ଣ୍ଣ,
ଛିଣ୍ଡି ଯାଇଛି ପୁଚ୍ଛ ପାରୁନି ଚାଳି
କ୍ଷୁଧାରେ ଜର୍ଜରିତ ଛାଡେ ବୋବାଳି ।

ଦେଖିଲେ ପ୍ରେମବତୀ ଶୁନୀକୁ ତା'ର
ସାରା ଶରୀରେ ଖେଳି ଯାଏ ଶୃଙ୍ଗାର,
ତା' ପଛେ ଗୋଡାଏ ସେ ଆସକ୍ତ ହୋଇ
କାମ କାମନା ତୃପ୍ତ କରିବା ପାଇଁ
ହୁଏ ତା' ମୃତ୍ୟୁ,
ଦର୍ପୀତ କନ୍ଦର୍ପ ତା' ହୁଅଇ ଶତ୍ରୁ ।

ସ୍ତ୍ରୀମୁଦ୍ରାଂ କୁସୁମାୟୁଧସ୍ୟ ଜୟିନୀଂ ସର୍ବାର୍ଥସମ୍ପତ୍କରୀଂ
ଯେ ମୂଢ଼ାଃ ପ୍ରବିହାୟ ଯାନ୍ତି କୁଧିୟୋ ମିଥ୍ୟା ଫଳାନ୍ୱେଷିଣଃ ।
ତେ ତେନୈବ ନିହତ୍ୟ ନିର୍ଦୟତରଂ ନଗ୍ନୀକୃତା ମୁଣ୍ଡିତାଃ
କେଚିତ୍ପଞ୍ଚଶିଖୀକୃତାଶ୍ଚ ଜଟିଳାଃ କାପାଳିକାଶ୍ଚାପରେ । ୭୯ ।

ପ୍ରୀତି ପ୍ରାବାହିଣୀ ନାରୀ ଶୃଙ୍ଗାରିଣୀ
ଅଟନ୍ତି କନ୍ଦର୍ପ ମୁଦ୍ରା
ସୁଖ ପ୍ରଦାୟିନୀ ସମ୍ପଦ ଦାୟିନୀ
ସର୍ବାର୍ଥ ସାଧିକା ସଦା ।

ଯେଉଁ ମୂଢ଼ଜନ ଦିଅନ୍ତି କଷଣ
ମିଥ୍ୟା ଫଳ ଲାଭ ପାଇଁ
ରଚନ୍ତି ଦୂଷଣ ଅବିବେକି ଜନ
ଦଣ୍ଡନ୍ତି କନ୍ଦର୍ପ ସାଇଁ ।
କାହାକୁ ଦହନ୍ତି ପଞ୍ଚାଗ୍ନି ଦହନେ
କାହାକୁ ମାରନ୍ତି ମାର,
କାପାଳିକ କରି କାହାକୁ ଛାଡନ୍ତି
କା' ମସ୍ତକେ ଜଟା ଭାର ।
ଏ'ତ କନ୍ଦର୍ପର ରୀତି
ମନରେ ସଂଚାରେ ଭୀତି ।

ବିଶ୍ୱାମିତ୍ର ପରାଶର ପ୍ରଭୃତୟୋ ବାତାମ୍ବୁପର୍ଣ୍ଣାଶନା -
ସ୍ତେଽପି ସ୍ତ୍ରୀ ମୁଖ ପଙ୍କଜଂ ସୁଲଲିତଂ ଦୃଷ୍ଟୈବ ମୋହଂ ଗତାଃ ।
ଶାଲ୍ୟନ୍ନଂ ସଘୃତଂ ପୟୋଦଧି ଯୁତଂ ଯେ ଭୁଞ୍ଜତେ ମାନବା
ସ୍ତେଷାମିନ୍ଦ୍ରିୟ ନିଗ୍ରହୋ ଯଦି ଭବେଦ୍ ବିନ୍ଧ୍ୟଃ ପ୍ଳବେତ୍ସାଗରେ । ୮୦ ।

ମହର୍ଷି ବିଶ୍ୱାମିତ୍ର ଯେ ପରାଶର
ପର୍ଣ୍ଣ କୁଟୀର ଅଟେ ବାସ ତାଙ୍କର,
ପତର ଫଳ ମୂଳ ଜଳ ସେ ସେବି
ତପରେ ମଗ୍ନ ସଦା ସଂସାର ତ୍ୟାଗୀ ।

ନାରୀର ପଦ୍ମ ମୁଖେ ପଡ଼ିଲେ ଆଖି
ସମ୍ମୋହନେ ହୁଅନ୍ତି ସେ ନାରୀମୁଖୀ,
ତପରେ ବିଘ୍ନଘଟେ ଚିତ୍ତ ବିଭ୍ରମେ
ଇନ୍ଦ୍ରିୟ ବଶ ହୋଇ ସେ ତପୀ ଗଣେ ।

ଯେ'ନର ଭୁଞ୍ଜେ ଦଧି ଦୁଗ୍ଧ ଘୃତାନ୍ନ
ତା'ଠାରେ ଭରିଥାଏ ଭରା ଯୌବନ,
ସେ କିନ୍ତୁ ଜିତେନ୍ଦ୍ରିୟ ହୋଇବ ଯେବେ
ସାଗରେ ମହିଧର ଭାସିବ ତେବେ ।
ଏ ଦୃଶ୍ୟ ଉପଭୋଗ୍ୟ ହୋଇବ ସିନା
ସେ ଦୃଶ୍ୟ କରି ଦେବ ମନକୁ ଉଣା ।

•

ହର୍ଷ ବିଷାଦରାଗ ସମାପ୍ତ

# ଋତୁ ବର୍ଣ୍ଣନା

ପରିମଳଭୃତୋ ବାତାଃ ଶାଖା ନବାଙ୍କୁର କୋଟୟେ
ମଧୁର ବିଧୁରୋତ୍କଣ୍ଠା ଭାଜଃପ୍ରିୟାଃ ପିକପକ୍ଷିଣାଂ ।
ବିରଳ ସୁରତ ସ୍ୱେଦୋଦ୍ଗାରା ବଧୂବଦନେନ୍ଦବଃ
ପ୍ରସରତି ମଧୌ ରାତ୍ର୍ୟାଂ ଜାତୋ ନ କସ୍ୟ ଗୁଣୋଦୟଃ । ୮୧ ।

ଆସିଛି ପୁରେ ପୁରେ
ବସନ୍ତ ସୁରେ ସୁରେ,
କରିଛି ମତୁଆଲା ମନକୁ
ତରୁ ତରୁଣୀ ଗଣ
ପିନ୍ଧି ନବ ଭୂଷଣ,
ପାଟଳ ପଲ୍ଲବରେ ବନକୁ ।
କରିଛି ପାଟଳିମା
ଅଙ୍କୁର ଅରୁଣିମା,
ବସାଇ ସୌନ୍ଦର୍ଯ୍ୟର ମେଳଣ
କୋକିଳ ଘନଘନ
ତୋଳେ ତା'ର କୂଜନ,
ବିରହ ଉତ୍କଣ୍ଠାର ଭଜନ ।
ତରୁଣୀ ମନକରେ ଉତଳା,
ଶରତ ସୁରତର
ଶ୍ରମବିନ୍ଦୁ ବଧୂର
ଚନ୍ଦ୍ରବଦନ, ପ୍ରୀତି ଉଚ୍ଛୁଳା ।
ଏହି ନବ ବସନ୍ତ, ଅଟେ କନ୍ଦର୍ପ ଦୂତ
କରିଛି ରୂପମୟୀ ପ୍ରକୃତି,
ତା'ର ମୋହନ ମନ୍ତ୍ର ମୋହିଛି ଏ ଜଗତ
କାହାକୁ ନ ମୋହେ ତା' ପୀରତି !

ମଧୁରୟଂ ମଧୁରୈରପି କୋକିଳା -
କଳରବୈର୍ମଳୟସ୍ୟ ଚ ବାୟୁଭିଃ ।
ବିରହିଣଃ ପ୍ରହିଣସ୍ତି ଶରୀରିଣୋ
ବିପଡି ହନ୍ତ ସୁଧାପି ବିଷାୟତେ । ୮୨ ।

ଏ’ ମଧୁ ମଳୟ, ଏ’ ଦୂତ କୋକିଳ
ବସନ୍ତର ଜୟଗାନେ -
ମୁଖରିତ ସଦା, ମଧୁ ମକରନ୍ଦ
ପରଷନ୍ତି କାନେ କାନେ ।

ମନ୍ଦ ମଳୟ ବିତରେ ସୁବାସ
ଅମୃତ ଯାଏ ଝରି,
ପିକ କଳରବ ସେ ସୁଧା ବିଭବ
ପ୍ରାଣେ ଦିଏ ପ୍ରୀତି ଭରି ।
କିନ୍ତୁ ବିପରୀତ ଗତି,
ବିରହିଣୀ ପ୍ରାଣ ଅସ୍ଥିର କରେ
ପ୍ରିୟ ବିରହର ତାତି ।
ବିପତ୍ତି ପଡିବା ବେଳେ,
ଅମୃତ ମଧ ପରିଣତ ହୁଏ
ଉତ୍କଟ ହଳାହଳେ ।

ଆବାସଃ କିଳକିଞ୍ଚିତସ୍ୟ ଦୟିତାଃ ପାର୍ଶ୍ୱେ ବିଳାସାଳସାଃ
କର୍ଣ୍ଣେ କୋକିଳ କାମିନୀ କଳରବଃ ସ୍ମେରୋ ଲତାମଣ୍ଡପଃ ।
ଗୋଷ୍ଠୀ ସତ୍କବିଭିଃ ସମଂ କତିପୟୈର୍ମୃଗାଃ ସିତାଂଶୋଃ କରାଃ
କେଷାଂ ଚିତ୍ତସୁଖୟନ୍ତି ଚାତ୍ର ହୃଦୟଂ ଚୈତ୍ରେ ବିଚିତ୍ରାଃ ସ୍ରଜଃ । ୮୩ ।

ଆସିଲା ମଧୁମାସ ଆସିଲା ରେ
ହସିଲା ବନଭୂମି ରସିଲା ରେ ।

ପାଶରେ ଥିଲେ ରସରଙ୍ଗିନୀ ରାଣୀ
ବିଳାସ ବିମୋହିତା ସେ ବିନୋଦିନୀ,
କୋକିଳ କଳରବେ ଉଚ୍ଛୁଳେ କାନ
ମଧୁ ମାଧବୀ ଲତା ମଣ୍ଡପେ ଗାନ ।

ରସିକ କବିଙ୍କର ଗୀତି ଝଙ୍କାର
କର୍ଣ୍ଣରେ ପ୍ରବାହିତ ଅମୃତ ଝର,
ଚଇତି ଚନ୍ଦ୍ରମାର ଚାରୁ ଚାନ୍ଦିନୀ
ନେତ୍ର ହୃଦୟ ମନ ନିଅଇ କିଣି ।

ପ୍ରବାସୀ ପ୍ରିୟ ପାଇଁ ଯନ୍ତ୍ରଣାମୟୀ,
ସ୍ୱବାସୀ ପାଇଁ ପ୍ରିୟା ଆହ୍ଲାଦମୟୀ
ବସନ୍ତ ପୀଡେ କା'ରେ, ତୋଷେ କା'ମନ
ଶୃଙ୍ଗାର ଚର୍ଚ୍ଚିତ କେ, ସ୍ମର କଷଣ-
ଭୋଗେ ପ୍ରବାସେ
ଏ' ମଧୁମାସେ ।

ପାନ୍ଥ ସ୍ତ୍ରୀ ବିରହାନଳା ହୁତିକଳା କାତନ୍ୱତୀ ମଞ୍ଜରୀ
ମା କନ୍ଦେଷୁ ପିକାଙ୍ଗନାଭିରଧୁନା ସୋତ୍କଣ୍ଠ ମାଲୋକ୍ୟତେ ।
ଅପ୍ୟାସ୍ତେ ନବପାଟଳା ପରିମଳ ପ୍ରାଗ୍‌ଭାର ପାଟଚ୍ଚରା
କାନ୍ତି କ୍ଳାନ୍ତି ବିତାନତାନବକୃତଃ ଶ୍ରୀଖଣ୍ଡଶୈଳାନିଳାଃ । ୮୪ ।

ନବ ବସନ୍ତର ଚୂତ ମୁକୁଳ
ପଥିକ ଅନ୍ତରେ ବିରହାନଳ -
ଦେଇଛି ଜାଳି,
କାମ କାନାର ଆହୁତି ଢ଼ାଳି ।

ଲତା କୁଞ୍ଜ କୋଳେ ବସି କୋକିଳା
ଦେଖି ଚୂତ ଡାଳେ ମଞ୍ଜରୀମାଳା
ବିକଳ ଚିତ୍ତ,
ତୋଳେ ସେ ବିରହ ବିଧୁର ଗୀତ ।

ପାଟଳି କୁସୁମ ସୁଗନ୍ଧ ସୁଧା
କ୍ଳାନ୍ତି ଦୂର କରେ ଶୃଙ୍ଗାରେ ସଦା,
ମଳୟା ଚଳୁ
ବହେ ମନ୍ଦାନିଳ ସେ ସୁଲୁସୁଲୁ ।
ବୋଲି ଦିଏ ଦେହେ ପ୍ରୀତି ଚନ୍ଦନ
କାନ୍ତ ବିରହିଣୀ ମନ ଉଚ୍ଛନ୍ନ
ବିଚ୍ଛେଦାନଳେ
ସତେ ବା ବସନ୍ତ ଆହୁତି ଢ଼ାଳେ ।

**ପ୍ରଥିତଃ ପ୍ରଣୟବତୀନାଂ ତାବତ୍ପଦମାତନୋତୁ ହୃଦିମାନଃ**
**ଭବତି ନ ଯାବଚ୍ଚନ୍ଦନତରୁ ସୁରଭିର୍ମଳୟ ପବମାନଃ । ୮୫ ।**

ସେ' ବାଳା ଅତି
ଗୁମାନବତୀ,
ପ୍ରୀତି ପ୍ରମୋଦିନୀ
ସେ ରସବତୀ !

ଥାଏ ସଦା ସିଏ ଗୁମାନଭରା
ସହଜରେ କେବେ ନ ଦିଏ ଧରା,
ବହେ ଯେତେବେଳେ ମଳୟାନିଳ
ପତ୍ର ପୁଷ୍ପେ ଭରା ତରୁ ସକଳ ।
ହୋଇଯାଏ ବାୟୁ ସୁଗନ୍ଧବାହୀ
ବିରହୀ ପରାଣ ଦିଅଇ ଦହି,
ଗୁମାନବତୀର ତୁଟେ ଗୁମାନ
ପ୍ରୀତି ପ୍ରଗଲ୍‌ଭା ସେ ହୁଅଇ ପୁଣ ।

ବସନ୍ତ ବାତର କି କରାମତି
ଉଚ୍ଛନ୍ନ ହୁଅଇ ସେ ମାନବତୀ ।
ସେ ମାନବତୀ ।।

ସହକାର କୁସୁମ କେଶର ନିକର ଭରା ମୋଦମୂର୍ଚ୍ଛିତ ଦିଗନ୍ତେ
ମଧୁର ମଧୁ ବିଧୁର ମଧୁପେ ମଧୌ ଭବେତ୍କସ୍ୟ ନୋତ୍କଣ୍ଠା । ୮୬ ।

ଶୀତଳ ସୁଲୁସୁଲୁ ବହେ ମଳୟ
ବିଶ୍ୱ ପ୍ରକୃତି ଆଜି ବସନ୍ତମୟ,
ବକୁଳ ମଞ୍ଜରୀରେ ମଣ୍ଡିତ ହୋଇ
ଦିଶନ୍ତି ଚୂତ ବନ କି ଶୋଭାମୟୀ
ମଧୁପ ଗଣ,
ସୁଗନ୍ଧାମୋଦେ ମାଦକିତ ପରାଣ ।

ମଧୁ ଉତ୍ସବେ ସର୍ବେ ହୁଅନ୍ତି ମତ୍ତ
ଉତ୍କଣ୍ଠା କା' ମଧ୍ୟରେ ନହେବ ଜାତ
ମଧୁମୟୀ ପ୍ରକୃତି,
ବସନ୍ତ ବନେ ଚୂତ କୁସୁମବତୀ ।

ଅଚ୍ଛାଚ୍ଛ ଚନ୍ଦନ ରସାର୍ଦ୍ରତରା ମୃଗାକ୍ଷୋ
ଧାରାଗୃହାଣି କୁସୁମାନି ଚ କୌମୁଦୀ ଚ ।
ମନ୍ଦୋମରୁତ୍ସୁ ମନସଃ ଶୁଚି ହର୍ମ୍ୟପୃଷ୍ଠଂ
ଗ୍ରୀଷ୍ମେ ମଦଂ ଚ ମଦନଂ ଚ ବିବର୍ଦ୍ଧୟନ୍ତି । ୮୭ ।

କୌମୁଦି ଚର୍ଚ୍ଚିତ ଏ'ରାକା ରଜନୀ
କୁସୁମେ କୁସୁମାୟିତ,
ବାସ ଚନ୍ଦନରେ ଚର୍ଚ୍ଚିତା ରମଣୀ
ସେ ଏଣୀ ନୟନାମୃତ ।
ରମ୍ୟ ହର୍ମ୍ୟମାଳା ଚାରୁ ଚନ୍ଦ୍ରଶାଳା
ମଧୁମୟୀ ମଧୁରାତି,
କା'ମନ ହୃଦୟ ନପାଡିବ କହ
ହେଉ ପଛେ ଗ୍ରୀଷ୍ମ ତାତି ।
ଅସହ୍ୟ କନ୍ଦର୍ପ ଜାଳା,
କାହା ମନ ଅବା ନ କରିବ ଉତଲା ।।

ସ୍ରଜୋ ହୃଦ୍ୟାମୋଦା ବ୍ୟଜନ ପବନଶ୍ଚନ୍ଦ୍ରକିରଣାଃ
ପରାଗଃ କାସାରୋ ମଳୟଜରଜଃ ଶୀଧୁ ବିଶଦଂ ।
ଶୁଚିଃ ସୌଧୋସଙ୍ଗଃ ପ୍ରତନୁ ବସନଂ ପଙ୍କଚଦୃଶୋ
ନିଦାଘର୍ତ୍ତାବେତଦ୍ ବିଳସତି ଲଭନ୍ତେ ସୁକୃତିନଃ ।୮୮ ।

ମଧୁଗନ୍ଧ ଭରା କୁସୁମ ମାଳା
ବ୍ୟଜନ ଚାଳିତ ସମୀର ଧାରା,
ଶୁଭ୍ର ସୁଶୀତଳ ଚନ୍ଦ୍ର କିରଣ
କୁସୁମ କେଶର ଧୂଳି ଚନ୍ଦନ -
କି ମନୋରମ,
ଶାନ୍ତି ଲଭିଥାନ୍ତି ବିରହୀ ଜନ ।

ଉଜ୍ଜ୍ୱଳ ସମୁଚ୍ଚ ପ୍ରାସାଦ ମାଳା
ଶୁଦ୍ଧ ସୁରଭିତ ମଧୁ ମଦିରା,
କୋମଳ ଚିକ୍କଣ ଭବ୍ୟ ଭୂଷଣ
ଯେ ଲଭେ ସେ ଅଟେ କି ଭାଗ୍ୟବାନ,
ପଦ୍ମନୟନା,
ଗ୍ରୀଷ୍ମତାପେ ଯା'ରେ ମିଳେ ଏ ସୁଯୋଗ
କର୍ମବନ୍ତଜନେ ହୁଅନ୍ତି ଗଣା ।

ସୁଧାଶୁଭ୍ରଂ ଧାମ ସ୍ଫୁରଦମଳରଶ୍ମିଃ ଶଶଧରଃ
ପ୍ରିୟା ବକ୍ତ୍ରାମ୍ଭୋଜଂ ମଳୟଜ ରଜ ଷାତି ସୁରଭି ।
ସ୍ରଜୋ ହୃଦ୍ୟା ମୋଦାସ୍ତଦିଦମଖିଳଂ ରାଗିଣି ଜନେ
କରୋତ୍ୟନ୍ତଃକ୍ଷୋଭଂ ନ ତୁ ବିଷୟସଂସର୍ଗ ବିମୁଖେ । ୮୯ ।

ସୁଧା ଶୁଭ୍ରଧାମ, ଚନ୍ଦ୍ର ମନୋରମ
ଚାନ୍ଦିନୀ ଚର୍ଚ୍ଚିତ ରଜନୀ,
ପ୍ରିୟା ପଦ୍ମାନନ, ସୁରଭି କୁସୁମ -
ମାଳା ବିମଣ୍ଡିତା ସଜନୀ ।

ସୁଗନ୍ଧି ଚନ୍ଦନ ରଜ ବିନୋଦିନୀ
ନ ମୋହେ କା' ମନ ମହିରେ
ବିଷୟ ବର୍ଜିତ ଯେ ବୈରାଗ୍ୟବନ୍ତ
କେ ପାରିବ କହ ଦହିରେ ।
ନୁହଇ ସେ କାମ ପୀଡିତ,
ବିଷୟୀ ଜନକୁ ସନ୍ତାପିତ କରେ
କାମ ଭାବେ କରି ମୋହିତ ।

**ତରୁଣୀବେଶୋଦ୍ଦୀପିତକାମା ବିକସଜ୍ଜାତୀପୁଷ୍ପସୁଗନ୍ଧିଃ**
**ଉନ୍ନତ ପୀନ ପୟୋଧରଭାରା ପ୍ରାବୃଟ୍ ତନୁତେ କସ୍ୟ ନ ହର୍ଷଂ । ୯୦ ।**

ଓହ୍ଲାଇ ଆସିଅଛି ମହିରେ
ଘନ ପ୍ରାବୃଟକାଳ ସହିରେ,
ମଧୁ ମାଳତୀ ଫୁଟି ମହକ
ବଢ଼ାଏ ବିରହର ଡହକ ।

ମଦନ ମାଦକିତା ରମଣୀ -
ବେଶ ଧରନ୍ତି ତରୁ ତରୁଣୀ,
ପାଟଳ ପଲ୍ଲବରେ ଭୂଷିତା
ସନ୍ତୋଷ ଲଭେ ତରୁ ତୃଷିତା ।

ଆକାଶେ ଝୁଲା ଝୁଲା ବାଦଲ
ଚହଲେ ହୋଇ ପ୍ରୀତି ପାଗଳ,
ନବୀନା ପୟୋଧର ପରାଏ
ଚହଲୁଥାନ୍ତି ବାରି ବାଳାଏ ।

କେ ନୁହେଁ ପ୍ରମୋଦିତ ଏ ବେଳେ
ନ ପଡେ କାମଦେବ କବଳେ ।।

ବିୟଦୁପଚିତମେଘଂ ଭୂମୟଃ କନ୍ଦଳିନ୍ୟୋ
ନବ କୁଟଜ କଦମ୍ବା ମୋଦିନୋ ଗନ୍ଧବାହାଃ ।
ଶିଖିକୁଳ କଳ କେକା ରାବରମ୍ୟା ବନାନ୍ତାଃ
ସୁଖିନମସୁଖିନଂ ବା ସର୍ବମୁତ୍କଣ୍ଠୟନ୍ତି । ୯୧ ।

ବର୍ଷା ବାରି ଆସିଛି ଝରି
ଭିଜାଇ ମାଟି ମେଦିନୀ,
ପାଉଛି ଶୋଭା, କି' ମନଲୋଭା
ନବାଙ୍କୁର ଶୋଭିନୀ ।
କୁଟଜ ଆଉ କଦମ୍ବ ଫୁଲ
ସୁବାସ ପାଇଁ ମାଗୁଛି ମୂଲ -
ବର୍ଷା ଭିଜା ସମୀରେ,
ମୟୂରକୁଳକେକାରେ ଭରା
ବସନ୍ତ ପୁର ନୃତ୍ୟଶାଳା,
କି ମନୋରମ ଛବିରେ !
ନ ଉଠେ କିଏ ଶିହରି
କି ସୁଖୀ ଦୁଃଖୀ ଉଠନ୍ତି ସବୁ
ଉତ୍କଣ୍ଠାରେ ଚହଲି ।

ଉପରି ଘନଂ ଘନପଟଳଂ ତିର୍ଯ୍ୟଗିରୟୋଽପି ନର୍ତ୍ତିତ ମୟୂରାଃ
କ୍ଷିତିରପି କନ୍ଦଳଧବଳା ଦୃଷ୍ଟିଂ ପଥିକଃ କ୍ୱ ପାତୟତି । ୯୨ ।

ଉର୍ଦ୍ଧ୍ୱରେ ଦୋଳାୟିତ ଘନ ପଟଳ
ଗିରି ଶିଖରେ ନୃତ୍ୟ ମୟୂରଦଳ,
ନବାଙ୍କୁରେ ଶୋଭିତ ଧରଣୀ ବୁକୁ
ପଥିକ ଦେବ ଧ୍ୟାନ କେଉଁ ଶୋଭାକୁ ।
ମନ ତା' ସନ୍ତାପିତ ବିରହାନଳେ
ଭେଟିବ ବୋଲି ତାର ପ୍ରିୟା ଆକୁଳେ
ଚାଲେ ପଥିକ,
ପଥ ଅନେକ ।

ଇତୋ ବିଦ୍ୟୁଦ୍‌ବଲ୍ଲୀ ବିଳସିତମିତଃ କେତକି ତରୋଃ
ସ୍ଫୁରନ୍‌ଗନ୍ଧଃ ପ୍ରୋଦ୍ୟଜ୍ଜଳଦ ନିନଦ ସ୍ଫୁର୍ଜିତ ମିତଃ ।
ଇତଃ କେକୀ କ୍ରୀଡା କଳକଳ ରବଃ ପକ୍ଷ୍ମଳଦୃଶାଂ
କଥଂ ଯାସ୍ୟନ୍ତ୍ୟେତେ ବିରହ ଦିବସାଃ ସଂଭୃତରସାଃ । ୯୩ ।

ଉତ୍ତାଳ ମେଘମାଳା ଆକାଶେ ଲୋଟେ
ବଜ୍ରବାଦଲ ଘୋଷ ଗମ୍ଭୀରେ ଛୁଟେ,
ତୀକ୍ଷ୍ଣ ତଡିତ୍ ରେଖା ଉଠେ ଚହଟି
କେତକୀ, ଗନ୍ଧାମୋଦେ ଉଛୁଳେ ଲୋଟି ।

କେକୀର କେକା କ୍ରୀଡା ନୃତ୍ୟ ଆସର
ମନକୁ ଉଚ୍ଚଟିତ ନକରେ କା'ର !
ଏ ବେଳ, ବିରହିଣୀ ଯୁବତୀ ପାଇଁ
ଉଦ୍ଦୀପନା ପ୍ରବଣ ସଦା ଅଟଇ-
ପାଶେ ନଥିଲେ ପ୍ରିୟ,
ଅବସ୍ଥା ଅଟେ ତାର କି ଦୟନୀୟ ।

ଅସୂଚୀ ସଂଚାରେ ତମସି ନଭସି ପ୍ରୌଢ଼ ଜଳଦ -
ଧ୍ୱନି ପ୍ରାଜ୍ଞଂ ମନ୍ୟେ ପତତି ପୃଷତାନାଂ ଚ ନିଚୟେ ।
ଇଦଂ ସୌଦାମିନ୍ୟାଃ କନକ କମନୀୟଂ ବିଳସିତଂ
ମୁଦଂ ଚ ମ୍ଳାନିଂ ଚ ପ୍ରଥୟତି ପଥି ସ୍ୱୈର ସୁଦୃଶାଂ । ୯୪ ।

ଶ୍ରାବଣର ସୁଚୀଭେଦ୍ୟ ଘନ ଅନ୍ଧକାରେ
ଗତିଶୀଳ ମେଘମାଳା ଗର୍ଜନ୍ତି ଗମ୍ଭୀରେ,
ବର୍ଷଣ ମୁଖର ମେଘୁ କରକା ପତିତ
ହୋଇଥାଏ ଝର ଝର ନିର୍ଝର ସମ୍ପାତ ।
ସୌଦାମିନୀ ଦିଶେ ଯଥା ସୁବର୍ଣ୍ଣ ସମ୍ଭାର
ଅଭିସାରିକା ରଚିଛି ବର୍ଷା ଅଭିସାର
ତୁନି ତୁନି ନିର୍ଜନ ପଥରେ -
ଆସଙ୍ଗ ଆଶାରେ ।

ଆସାରେଣ ନହର୍ମ୍ୟତଃ ପ୍ରିୟତମୈର୍ଯାତୁଂ ବହିଃ ଶକ୍ୟତେ
ଶୀତୋତ୍କମ୍ପ ନିମିତମାୟତଦୃଶା ଗାଢ଼ଂ ସମାଲିଙ୍ଗ୍ୟତେ ।
ଜାତାଃ ଶୀକର ଶୀତଳାଷ୍ଟ ମରୁତୋରତ୍ୟନ୍ତସ୍ୱେଦଚ୍ଛିଦୋ
ଧନ୍ୟାନାଂ ବତଦୁର୍ଦ୍ଦିନଂ ସୁଦିନତାଂ ଯାତି ପ୍ରିୟାସଙ୍ଗମେ । ୯୫ ।

ଘନ ପ୍ରାବୃଟ କାଳ
ଝରଇ ବର୍ଷା ଝର -
ମୂଷଳ ଧାରେ, ନାହିଁ ବିରତି,
ବାହାରି ନ ପାରନ୍ତି
ରହି ଅଛନ୍ତି ପତି
ସଦନେ ଆଜି ପ୍ରେମ ମୂରତି ।
ଶୀତ କମ୍ପିତ ସାରା ଶରୀର,
ଚାହୁଁଛି ଉଷ୍ମ ସ୍ପର୍ଶ ମଦିର ।

ପାଖରେ ପ୍ରଣୟିନୀ
ସେ ଭାବ ବିନୋଦିନୀ,
ଆକୁଳ ଆଲିଙ୍ଗନ ପାଇଁ କି,
ଶୃଙ୍ଗାର ବିନୋଦିଆ
ସୁରତ ଦିଆନିଆ,
ଲିଭାଏ ଶ୍ରମ ସ୍ୱେଦ ବାରିକି ।
ଶୀତଳ ସମୀରଣ ପ୍ରବାହ,
ଲିଭାଏ ଅଗ୍ନି ଶିଖା ବିରହ ।

ଏ' ଭରା ଶ୍ରାବଣରେ
ଦୁର୍ଦ୍ଦିନ, ସୁଦିନରେ -
ହୁଅଇ ପରିଣତ ଅଚିରେ,
ଅଟେ ଯେ ପୁଣ୍ୟଜନ
ଲଭେ ଶୃଙ୍ଗାର ଧନ,
ହୁଏ ସେ ମତ୍ତ ଭରା ଭୋଗରେ ।
ଧନ୍ୟ ଶ୍ରାବଣ ଧାରା ତୁହିରେ,
ପ୍ରୀତି ଉତ୍ସବ ପାଳୁ ମହିରେ ।

ଅର୍ଦ୍ଧଂ ସୁପ୍ତ୍ୱା ନିଶାୟାଃ ସରଭସ ସୁରତାୟା ସଖିନ୍ନ ଶ୍ଲଥାଙ୍ଗଃ
ପ୍ରୋଦ୍‌ଭୁତା ସହ୍ୟତୃଷ୍ଣୋ ମଧୁମଦନିରତୋ ହର୍ମ୍ୟପୃଷ୍ଠେ ବିବିକ୍ତେ ।
ସମ୍ଭୋଗ କ୍ଳାନ୍ତ କାନ୍ତା ଶିଥିଳ ଭୁଜଲତା ବର୍ଜିତଂ କର୍କରୀତୋ -
ଜ୍ୟୋତ୍ସ୍ନାଭିନ୍ନାଚ୍ଛଧାରଂ ନ ପିବନ୍ତି ସଲିଳଂ ଶାରଦଂ ମନ୍ଦଭାଗ୍ୟଃ । ୯୬ ।

ହୋଇଛି ଅଙ୍ଗ ଖିନ୍ନ ସୁରତ ଶ୍ରମେ
ଶରତ ଯାମିନୀରେ ସେ ଅର୍ଦ୍ଧ ଯାମେ,
ଶୃଙ୍ଗାର କ୍ଳାନ୍ତି ତୃଷା ମେଣ୍ଟିବା ପାଇଁ
ମଧୁ ମଦିରା ପାନ ସେ କରିଥାଇ -
କି ଅବିଚାରୀ,
ସ୍ୱପ୍ନ ବିହାରୀ ।
କାନ୍ତା ଅଙ୍ଗଲତିକା ସମ୍ଭୋଗ କ୍ଳାନ୍ତ
ଜ୍ୟୋତ୍ସ୍ନା ଅମୃତଭରା ତା' ପାନ ପାତ୍ର,
ନକରି ପାନ ତାହା, ଯ କରେ ପାନ -
ମଦିରା, ମଧୁଭାବି, ଅଟେ ଦୁର୍ଜ୍ଜନ
ସେ ପୁଣ୍ୟହୀନ
ଅଭାଗା ଜନ ।

ହେମନ୍ତେ ଦଧି ଦୁଗ୍ଧ ସର୍ପିରଶନା ମାଞ୍ଜିଷ୍ଠ ବାସୋଭୃତଃ
କାଶ୍ମୀରଦ୍ରବସାନ୍ଦ୍ର ଦଗ୍ଧ ବପୁଷଃ ଖିନ୍ନା ବିଚିତୈ ରବୈଃ,
ବୃତ୍ତୋରୁ ସ୍ତନ କାମିନୀଜନ କୃତାଶ୍ଲେଷା ଗୃହାଭ୍ୟନ୍ତରେ
ତାମ୍ବୂଳୀଦଳପୂଗପୂରିତମୁଖା ଧନ୍ୟାଃ ସୁଖଂ ଶେରତେ । ୯୭ ।

ଦଧି ଦୁଗ୍ଧ ଘୃତ ଭୋଜନ ଅମୃତ
କସ୍ତୁରୀ କୁଙ୍କୁମ ବୋଳା ଶରୀର,
ଅରୁଣ ବାସରେ ମଣ୍ଡିତ ହୋଇଛି
ପ୍ରୀତି ପ୍ରତୀକ୍ଷିତ ସ୍ୱପ୍ନେ ବିଭୋର ।

ରତିବନ୍ଧ ଯୁତ ପ୍ରୀତି ପ୍ରବନ୍ଧିତ
ପୀନ ପୟୋଧର ପରଶବୋଲା
ଚୁମ୍ବନ ଚର୍ଚ୍ଚିତ ରଦ କ୍ଷତାହତ
ଅଟଇ, ରସିକ ମନ ଉଚ୍ଛୁଳା -
ଶୃଙ୍ଗାରାମୋଦେ,
ତାମ୍ବୁଳ ସେବନେ ରସ ଘନ ମନେ
ଶୟନ କରଇ ଶୃଙ୍ଗାରାନନ୍ଦେ ।

**ପ୍ରୋଦ୍ୟପ୍ରୌଢ଼ ପ୍ରିୟଙ୍ଗୁ ଦ୍ୟୁତିଭୃତି ବିକସକ୍କୁନ୍ଦମାଦ୍ୟଦ୍ଦ୍ୱିରେଫେ**
**କାଲେ ପ୍ରାଲେୟବାତ ପ୍ରଚଳ ବିଲସି ତୋଦାର ମନ୍ଦାର ଧାମ୍ନି ।**
**ଯେଷାଂ ନୋ କଣ୍ଠଲଗ୍ନା କ୍ଷଣମପି ତୁହିନକ୍ଷୋଦଦକ୍ଷା ମୃଗାକ୍ଷୀ**
**ତେଷା ମାୟାମୟାମା ଯମସଦନସମା ଯାମିନୀ ଯାତି ଯୂନାଂ । ୯୮ ।**

ମହିକୁ ଓହ୍ଲାଇଛି ଶୀତ ଶର୍ବରୀ
ଚାହୁଁଛି ମନ ନେବ ଉଷ୍ଣତାଭରି,
ପ୍ରିୟଙ୍ଗୁ ଦ୍ୟୁତି ସମ ଘନ କାଳିମା
ଭୃଙ୍ଗ ଯୋଜିତ କୁନ୍ଦ ସେ ମନୋରମା
ଶୋଭାମୟୀ ମନ୍ଦାର,
ଶୀତଳ ବାତ ସ୍ନାତ ସାରା ଶରୀର ।

ବିରହ ତାତି ରାତି ଗଭୀର ଅତି
ଚାହୁଁଛି ମନ ମଧୁ ପ୍ରୀତି ଆଳତି,
ମିଳେନି ଯଦି ପ୍ରିୟା ଭୁଜ ବନ୍ଧନ
ଯୁବା ଜୀବନ, ତା'ର କି ଅକାରଣ
ସେ' ଶୀତ ରାତି,
ଯମ ପୁର ସଦୃଶ ଯନ୍ତ୍ରଣା ଅତି ।

ଚୁମ୍ବନ୍ତୋ ଗଣ୍ଡଭିତ୍ତୀରଳକବତି ମୁଖେ ସୀତ୍କୃତାନ୍ୟା ଦଧାନାଂ
ବକ୍ଷଃସୂତ୍କଞ୍ଚୁକେଷୁ ସ୍ତନଭର ପୁଲକୋ ଭେଦମାପାଦୟନ୍ତଃ ।
ଉରୂନା କମ୍ପୟନ୍ତଃ ପୃଥୁ ଜଘନତଟାସ୍ତ୍ରଂସୟନ୍ତୋଂଽଶୁକାନି
ବ୍ୟକ୍ତଂ କାନ୍ତାଜନାନାଂ ବିଟଚରିତଭୃତଃ ଶୈଶିରା କାନ୍ତି ବାତାଃ । ୯୯ ।

ଶିଶିର ଆସିଅଛି ମହିରେ
ଡାକୁଛି ଚୁପି ଚୁପି ସହୀରେ,
ଅଳକ ଶୋଭିନୀ ସେ କାମିନୀ
ଚୁମିଲେ ଗଣ୍ଡଦେଶେ, ମାନିନୀ

ଶିହରି ଉଠେ ତା'ର ଶରୀର
ଛୁଟଇ କାମଲିପ୍‌ସା ଲହର,
ଶିଥିଳ ହୁଏ କୁଚ ଉତ୍ତରୀ
ରୋମଞ୍ଚେ ଭିଜେ ବପୁ ବଲ୍ଲରୀ ।

କମ୍ପିତ ତାର ଘନ ଜଘନ
ଶିଶିର ବାତ ଟାଣେ ବସନ
କରେ ବିହାର,
ଜାର ସମୀର ।

କେଶାନା କୁଳୟନ୍ ଦୃଶୋ ମୁକୁଳନୟନ୍ ବାସୋ ବଳାଦାକ୍ଷିପନ୍ନ
ତନ୍ୱନ୍ ପୁଲକୋଦ୍‌ଗମଂ ପ୍ରକଟୟନ୍ନାବେଗକମ୍ପଂ ଶନୈଃ ।
ବାରଂବାର ମୃଦାରସୀକୃତ କୃତୋ ଦନ୍ତଚ୍ଛଦାନ୍ ପୀଡ଼ୟନ୍
ପ୍ରାୟଃ ଶୈଶିର ଏଷ ସମ୍ପ୍ରତି ମରୁତ୍କାନ୍ତାସୁ କାନ୍ତାୟତେ । ୧୦୦ ।

ଶିଶିର ତୋଳିଛି ଅଭିସାର
ମିଳନ ମର୍ଯ୍ୟ ପୁର ପୁର,
ଏତେବେଳେ କାନ୍ତା ଶିଶିରିତା
ମୁକୁଳା କେଶ ତା' ବିଚ୍ଛୁରିତା ।

ନୟନ ଯୁଗଳ ନିମୀଳିତ
ବାସ ବନ୍ଧନ ଶିଥିଳିତ,
ପ୍ରୀତି ପୁଲକର ପରଶରେ
ରୋମାଞ୍ଚ ଜାଗେ ହରଷରେ ।

ଶିହରଣ ଜାଗେ ସନସନ
ଛନଛନ ମନ ଛନଛନ,
ରଦଚ୍ଛଦ କରେ ବାରବାର
ଲଂଘିଛି ନଈ କୂଳତା'ର
ଆଜିଏ ଶିଶିର ସମୀରଣ
ରମଣୀଗଣଙ୍କ ବଇରୀ ସାଜିଛି
ଅକାରଣ....ଅକାରଣ ।

•

ଶୃଙ୍ଗାର ଶତକ ସମାପ୍ତ

ଚୂଡୋତ୍ତଂସିତଚନ୍ଦ୍ର ଚାରୁକଳିକା ଚଞ୍ଚତ୍‌ଶିଖା ଭାସ୍ୱରୋ
ଲୀଳାଦଗ୍ଧ ବିଲୋକ କାମ ଶଲଭଃ ଶ୍ରେୟୋଦଶାଗ୍ରେ ସ୍ଫୁରନ୍,
ଅନ୍ତଃସ୍ଫୂର୍ଜଦପାର ମୋହ ତିମିର ପ୍ରାଗ୍‌ଭାର ମୁଚ୍ଚାଟୟନ୍
ଚେତଃସଦ୍ମନି ଯୋଗିନାଂ ବିଜୟତେ ଜ୍ଞାନପ୍ରଦୀପୋ ହରଃ । ୧ ।

ନମସ୍ତେ ନୀଳ ଲୋହିତ ! ଶିରେ ଚନ୍ଦ୍ରକଳା
ହେ ଶିବ ଶଙ୍କର ପ୍ରଭୁ ବିଶ୍ୱନାଥ ଭୋଳା !
କନ୍ଦର୍ପ ଦର୍ପ ହାରିଲ କରିଲ ବିଧ୍ୱଂସ
ମୋହାନ୍ଧକାର ନାଶିଲ ହେ ପ୍ରଭୁ ଦେବେଶ ।

ଜ୍ଞାନାଲୋକେ ହୃଦୟକୁ କର ଆଲୋକିତ
ଦୂର କରିଦିଅ ପ୍ରଭୁ ସକଳ ଦୁରିତ,
ଜ୍ଞାନର ପ୍ରଦୀପ ଜାଳ ସଜ୍ଜନ ଚିତ୍ତରେ
ଶାନ୍ତିର ଅମୃତ ଢ଼ାଳ ନିଖିଳ ଅନ୍ତରେ ।

ହେ ମଙ୍ଗଳମୟ ପ୍ରଭୁ ତବ ଶ୍ରୀଚରଣେ
ପ୍ରଣାମ ଢ଼ାଳୁଛି ପ୍ରଭୁ, ଏ ବିଶ୍ୱ କଲ୍ୟାଣେ,
ସହାୟକ ହୁଅ ମୋତେ ପଦ ପ୍ରବନ୍ଧରେ
ଏତିକି ମୋ' ଅଳି,
ପରିପୂର୍ଣ୍ଣ କର ପ୍ରଭୁ ହେ ଚନ୍ଦ୍ରମଉଳି ।

ଭ୍ରାନ୍ତଂ ଦେଶମନେକ ଦୁର୍ଗବିଷମଂ ପ୍ରାପ୍ତଂ ନ କିଞ୍ଚିତ୍‌ଫଳଂ
ତ୍ୟକ୍ତ୍ୱା ଜାତିକୁଳାଭିମାନମୁଚିତଂ ସେବା କୃତା ନିଷ୍ଫଳା ।
ଭୁକ୍ତଂ ମାନବିବର୍ଜିତଂ ପରଗୃହେଷାଶଙ୍କୟା କାକବତ୍
ତୃଷ୍ଣେ ଜୃମ୍ଭସି ପାପକର୍ମ ନିରତେ ନାଦ୍ୟାପି ସନ୍ତୁଷ୍ୟସି । ୨ ।

ଭ୍ରମିଲି ନାନା ଦେଶ
ଲଭିଲି ବହୁ କ୍ଳେଶ
ମିଳିଲା ନାହିଁ କିଛି ସୁଫଳ,
ଛାଡିଲି ଜାତି କୁଳ
ସ୍ୱାଭିମାନ ସକଳ
ବିହିତ ସେବା ହେଲା ନିଷ୍ଫଳ ।

ଭୁଲି ମର୍ଯ୍ୟାଦା ମାନ
ସଶଙ୍କ କାକ ସମ
ଭୁଞ୍ଜିଲି ପର ଦ୍ୱାରେ ଆହାର,
ତୃଷ୍ଣାତୁର ଏ ମନ
ଦୁର୍ମତି, ପାପ ଘନ
ଅତୃପ୍ତ ସଦା କିମ୍ପା ଅନ୍ତର ।
ସନ୍ତୋଷ ମିଳିଲାନି ଜୀବନେ
କାହିଁବା ଅଛି ଶାନ୍ତି ଭୁବନେ ।।

ଉତ୍‌ଖାତଂ ନିଧିଶଙ୍କୟା କ୍ଷିତିତଳଂ ଧ୍ମାତା ଗିରେର୍ଧାତବୋ
ନିସ୍ତୀର୍ଣ୍ଣଃ ସରିତାଂ ପତିର୍ନୃପତୟୋ ଯତ୍ନେନ ସନ୍ତୋଷିତାଃ ।
ମନ୍ତ୍ରାରାଧନ ତତ୍ପରେଣ ମନସା ନୀତାଃ ଶ୍ମଶାନେ ନିଶାଃ
ପ୍ରାପ୍ତଃ କାଣ ବରାଟକୋଽପି ନ ମୟା ତୃଷ୍ଣେଽଧୁନା ମୁଞ୍ଚ ମାଂ ।୩।

ତୃଷ୍ଣା ତୁମେ ମୋତେ କରିଛ ଅସ୍ଥିର
ଦେଇନାହଁ ଶାନ୍ତି କେବେ,
ଖୋଳିଛି ଭୂତଳ କେତେ ଗିରିମାଳ
ସ୍ୱର୍ଣ୍ଣରତ୍ନ ଧାତୁ ଲୋଭେ ।

ଲକ୍ଷ୍ୟ ବହୁଦୂର, ଲଂଘିଛି ସାଗର
ପୂରଣ କରିବା ପାଇଁ,
ସେବିଛି ରାଜନ, ତୋଷିବାକୁ ମନ
ସଦୟ ହୋଇବେ ସାଇଁ ।

ମହା ଶ୍ମଶାନରେ ଯାପିଛି ରଜନୀ
ମହାମନ୍ତ୍ର ସାଧିବାକୁ,
ମନ ଧ୍ୟାନ ଦେଇ ମନ୍ତ୍ର ମୁଁ ଜପିଛି
ସିଦ୍ଧିଲାଭ କରିବାକୁ ।
ବିଫଳ ହୋଇଲା ସବୁ
କାଣି କଉଡି ବି ମିଳିଲାନି ମୋତେ
ନିର୍ଦ୍ଦୟ ହୋଇଲେ ପ୍ରଭୁ ।

ଏବେ ତୃଷ୍ଣା ମୋତେ ଅସ୍ଥିର ନକର ଆଉ
ବିଦାୟ ନିଅହେ ବେଦନା ବିହାରୀ,
ଏ ଜୀବନ ଥାଉ ଥାଉ,
ଏ ଜୀବନ ଥାଉ ଥାଉ ।

ଖଳାଳାପାଃ ସୋଢ଼ାଃ କଥମପି ତଦାରାଧନପରୈ -
ର୍ନିଗୃହ୍ୟାନ୍ତର୍ବାଷ୍ପ ହସିତମପି ଶୂନ୍ୟେନ ମନସା ।
କୃତୋବିତ୍ତସ୍ତମ୍ଭପ୍ରତିହତଧିୟା ମଞ୍ଜଳିରପି
ତ୍ୱମାଶେ ମୋଘାଶେ କିମ୍ପ ପରମିତୋ ନର୍ତ୍ତୟସି ମାଂ । ୪ ।

କରିଲି ଖଳ ସେବା ତୁମରି ପାଇଁ
ହେ ତୃଷ୍ଣା ! ତୁମେ ମୋତେ କରିଲ ବାଇ,
ଶୁଣିଲି ଗାଳି ନିନ୍ଦା କଟୁ ବଚନ
ସହିଲି ସବୁ, କ୍ଷୁଣ୍ଣ ନ କରି ମନ ।

ଭିତରେ ଜଳୁଥାଏ ଉପରେ ହସେ
ଆନ୍ତରିକତା ତହିଁ ନଥାଏ ଲେଶେ,
ଅପାତ୍ରେ, କରପତ୍ର ଯୋଡିଲି ଯାଇ
ଧନ ଲାଳସା ପୂର୍ଣ୍ଣ କରିବା ପାଇଁ ।

ଅପୂର୍ଣ୍ଣ ରହିଗଲା ସମସ୍ତ ଆଶା
ମେଣ୍ଟିଲା ନାହିଁ ମୋର ପ୍ରାଣ ପିପିସା,
ତମରି ପାଇଁ ଲଭେ ମୁଁ ପରାଭବ
ଏପରି କେତେଦିନ ପ୍ରଭୁ ଦଣ୍ଡିବ !

ଲାଳସା ଲୋଲୁପରେ ହୋଇଛି ବଶ
ତା' ପଦେ ଅରପିଛି ମୋ ପଉରୁଷ,
ଏପରି କେତେ ଦିନ ଭୋଗିବି ଦଶା
ହୋଇବି ପ୍ରଭୁ ନିତି ମୁଁ ଲୋକହସା ।
ତୃଷ୍ଣା ! ହେଲ ବଇରୀ,
କିପରି ତୁମ ଦୁଃଖୁ ହୋଇବି ପାରି ।।

ଆମୀଷାଂ ପ୍ରାଣାନାଂତୁଳିତବିସନୀପତ୍ରପୟସାଂ
କୃତେ କିଂ ନାସ୍ମାଭିର୍ବିଗଳିତ ବିବେକୈର୍ବ୍ୟବସିତଂ ।
ଯଦାଢ୍ୟାନାମଗ୍ରେ ଦ୍ରବିଣମଦ ନିଃସଂଜ୍ଞମନସାଂ
କୃତଂ ମାନବ୍ରୀଡେ ର୍ନିଜଗୁଣକଥା ପାତକମପି । ୫ ।

ପଦ୍ମ ପତ୍ରରେ ଜଳ, ହୁଅଇ ଢ଼ଳଢ଼ଳ ଯେପରି,
ଜୀବର ଏ' ଜୀବନ, ଅଟେ ଅନିତ୍ୟ ପୁଣ ସେପରି,
ଜାଣି ଏ' ମହାସତ୍ୟ, କରେ ମଣିଷ ନିତ୍ୟ ଅନୀତି,
ଦୁଷ୍କର୍ମେ ଥାଏ ଲିପ୍ତ ହୋଇ ସେ' ମଦମତ୍ତ ଦୁର୍ମତୀ -
ବିଚାର ବିବେକ ତା' ହରାଇ,
କରେ ପ୍ରଚାର ତା'ର ବଡ଼େଇ ।

ନିର୍ଲଜ ସମ ତା'ର ନଥାଏ ସ୍ୱାଭିମାନ ଭାବନା
ଆତ୍ମସ୍ତୁତୀରେ ବାଇ ସର୍ବଦା ମନ ତା'ର ଉନ୍ମନା ।
ବୁଝେନା ଧର୍ମ କର୍ମ ଅନୁଶାସନ ହୀନ ଜୀବନ
ପାପାବର୍ତ୍ତରେ ନିତି ସର୍ବଦା ଘୂରୁଥାଏ ତା' ମନ ।
ସେ' ଅଟେ ସ୍ୱେଚ୍ଛାଚାରୀ ମଣିଷ
ବିଶୃଙ୍ଖଳାରେ ମନ ହରଷ ।

କ୍ଷାନ୍ତଂ ନ କ୍ଷମୟା ଗୃହୋଚିତ ସୁଖଂ ତ୍ୟକ୍ତଂ ନ ସନ୍ତୋଷତଃ
ସୋଢ଼ା ର୍ଦୁଃସହ ଶୀତବାତ ତପନକ୍ଲେଶା ନତପ୍ତଂ ତପଃ ।
ଧ୍ୟାତଂ ବିତ୍ତମହର୍ନିଶଂ ନିୟମିତ ପ୍ରାଣୈଂ ର୍ନ ଶମ୍ଭୋଃ ପଦଂ
ତତ୍ତତ୍କର୍ମ କୃତଂ ଯଦେବ ମୁନିଭିସ୍ତୈସ୍ତୈଃ ଫଳୈର୍ବଞ୍ଚିତାଃ । ୬ ।

କ୍ଷମା ଧର୍ମ ବୋଲି, କ୍ଷମା ମୁଁ କରିନି,
କରିଛି ଦୁର୍ବଳ ବୋଲି,
ମୁଁ ସଂସାର ତ୍ୟାଗ କରିନି ବୈରାଗ୍ୟେ,
ସବୁ ସୁଖ ଗଲା ଚାଲି-
ହରାଇଲି ଗୃହ ସୁଖ,
ହେଲି ସଂସାର ବିମୁଖ ।

ତପ ଆଚରିଲି ତପସ୍ୱୀ ପରି ମୁଁ
ସହିଛି ତପନ କ୍ଲେଶ,
ଶୀତାର୍ତ୍ତ ହୋଇଛି ଶୀତଳ ପବନେ
ଭୋଗିଛି ବର୍ଷଣ ତ୍ରାସ ।

ଧନଲାଭେ ଚିତ୍ତ, ସତତ ଉନ୍ମତ୍ତ
ଶିବଙ୍କୁ କରିନି ଧ୍ୟାନ,
ସଦା ଅସନ୍ତୋଷ ଅତୃପ୍ତିରେ ମମ
ବିତିଲା ସାରା ଜୀବନ ।

ମୁନି ଜନ ପରି କଲି ଆଚରଣ
ଦଗ୍ଧ ହେଲି ତପ ତାପେ,
ବିଫଳ ହୋଇଲା ସମସ୍ତ ସାଧନା
କ୍ଷାନ୍ତ ହେଲି ଆପେ ଆପେ ।
ବିଚିତ୍ର ଜୀବନ ଗତି,
ଭୋଗିବାକୁ ଥିଲା ଜୀବନରେ ମୋ'ର
ଅଭାଗାର ଭାଗ୍ୟ ଗତି ।

**ଭୋଗା ନଭୁକ୍ତା ବୟମେବ ଭୁକ୍ତାସ୍ତପୋ ନଂ ତପ୍ତଂ ବୟମେବ ତପ୍ତାଃ**
**କାଲୋ ନ ଯାତୋ ବୟମେବ ଯାତାସ୍ତୃଷ୍ଣା ନଜୀର୍ଣ୍ଣା ବୟମେବ ଜୀର୍ଣ୍ଣାଃ ।୭ ।**

ରହସ୍ୟମୟ ଅଟେ ମନର ଗତି
ବୁଝିବା କଷ୍ଟକର ମଣିଷ ମତି,
ଭାବୁଛୁ ସିନା ଆମେ କରୁଛୁ ଭୋଗ
କିନ୍ତୁ ଅଟଇ ନର, ଭୋଗର ଭୋଗ୍ୟ ।

ତାପ ହୁଏନି ତପ୍ତ ହେଉଛୁ ଆମେ
ସର୍ବଦା ତାପତପ୍ତ ଏ' ଭୋଗଭୂମେ,
'କାଳ' ହୁଏନି ଗତ, ଗତାୟୁ ନର
ନ ଅଟେ ଚଳମାନ 'କାଳ' ତ ସ୍ଥିର ।

ତୃଷ୍ଣା ନ ହୁଏ କ୍ଷୀଣ ଜୀବନେ କେବେ
ମଣିଷ ଜରା ଜୀର୍ଣ୍ଣ ସଦା ଏ ଭବେ ।
ଏ ସତ୍ୟ ଗାଥା
ପାରିବ କରି କିଏ ଏହା ଅନ୍ୟଥା ।।

ବଳୀଭିର୍ମୁଖମାକ୍ରାନ୍ତଂ ପଳିତେନାଙ୍କିତଂ ଶିରଃ
ଗାତ୍ରାଣି ଶିଥିଳାୟନ୍ତେ ତୃଷ୍ଣୈକା ତରୁଣାୟତେ । ୮ ।

ପଙ୍କଜ ମୁଖ ମଉଳି ଗଲାଣି
ଲୁଳିତ ଲଳିତ ଚମ
ମଳିନ ହେଲାଣି ରୂପ ଲାବଣ୍ୟ
ଦିଶୁନାହିଁ ମନୋରମ ।
ଶିଥିଳ ହେଲାଣି ଶରୀରର ଶୋଭା
ବାର୍ଦ୍ଧକ୍ୟ ଘୋଟିଲାଣି,
ପଳିତ ହେଲାଣି ଶିର କୁନ୍ତଳ
କୃଷ୍ଣିମା ଲିଭିଲାଣି ।
ହସୁଛି ଶୁଭ୍ର କେଶ,
ଯଉବନହରା ବେଶ ।

ସବୁତ ହଜିଛି, ସବୁତ ଲିଭିଛି
ଜଳୁଛି ତୃଷ୍ଣା ଶିଖା,
ହୁତୁ ହୁତୁ ହୋଇ ଜୀବନ ଯଜ୍ଞେ
ଯୌବନମୟୀ ଅବା
ଧନ୍ୟ ସେ ପିଶାଚିନୀ,
ଶାସନ କରୁଛି ସଙ୍କଟ ସବୁ ଜିଣି ।

ନିବୃତ୍ତା ଭୋଗେଚ୍ଛା ପୁରୁଷ ବହୁମାନୋଽପିଗଳିତଃ
ସମାନାଃ ସ୍ୱର୍ଯାତାଃ ସପଦି ସୁହୃଦୋ ଜୀବିତସମାଃ ।
ଶନୈର୍ଯଷ୍ଟ୍ୟୁତ୍ଥାନଂ ଘନତିମିରରୁଦ୍ଧେ ଚ ନୟନେ
ଅହୋ ମୂଢ଼ଃ କାୟସ୍ତଦପି ମରଣାପାୟଚକିତଃ । ୯ ।

ଅଦ୍ଭୁତ ଏ' ମଣିଷ ଅତି ଅଦ୍ଭୁତ
ଦେଖୁଛି ଏ' ସଂସାର ଅଟେ ଅନିତ୍ୟ,
ବାର୍ଦ୍ଧକ୍ୟ ଘୋଟିଲାଣି ଜୀବନେ ତା'ର
ପଶେନା ଚେତା କିନ୍ତୁ ମନେ ତାହାର ।

ହେଲାଣି ଭୋଗ ଇଚ୍ଛା ନିବୃତ୍ତ ମନୁ
ସେ ମ୍ରିୟମାଣ, ମାନ, ସମ୍ମାନ ବିନୁ,
ଗଲେଣି ସାଙ୍ଗ ସାଥୀ ଥିଲେ ଯେତେକ
ସେ କିନ୍ତୁ ଯିବା ପାଇଁ ନୁହେଁ ଇଚ୍ଛୁକ ।

ଥରଇ ଥୁରୁ ଥୁରୁ ଜୀର୍ଣ୍ଣ ଶରୀର
ଯଷ୍ଟି ଧରି ସେ କଷ୍ଟେ ହୁଏ ବାହାର,
ଚାଲିଲା ବେଳେ, ପାଦ ହୁଏ ବାଉଳା
ନୟନ ଜ୍ୟୋତିହୀନ ପରଲେ ଧଳା ।

ଏତେ ଭୋଗିବି ବୁଝେ ନାହିଁ ତା' ମନ
ଚାହେଁନା ସିଏ ଭେଟିବାକୁ ମରଣ,
ଜୀବନ ପଥ ହେଉ ଯେତେ କଠୋର
ବଞ୍ଚିବା ପାଇଁ ସଦା ମନ ଆତୁର ।

ଆଶାନାମନଦୀ ମନୋରଥଜଳା ତୃଷ୍ଣାତରଙ୍ଗାକୁଳା
ରାଗଗ୍ରାହବତୀ ବିତର୍କବିହଗା ଧୈର୍ଯ୍ୟଦ୍ରୁମ ଧ୍ୱଂସିନୀ ।
ମୋହାବର୍ତ୍ତ ସୁଦୁସ୍ତରାତି ଗହନା ପ୍ରୋତ୍ତୁଙ୍ଗ ଚିନ୍ତାତଟୀ
ତସ୍ୟାଃ ପାରଗତା ବିଶୁଦ୍ଧ ମନସୋ ନନ୍ଦନ୍ତି ଯୋଗୀଶ୍ୱରାଃ । ୧୦ ।

ତାପସ ଗଣ
ଆନନ୍ଦେ ହୋଇଥାନ୍ତି ତପେ ମଗନ ।

ଆଶା ଅଟଇ ନଦୀ, କୂଳ ଉଚ୍ଛୁଳା
ମନ କାମନା ତହିଁ ତା' ଜଳଧାରା ।
ତୃଷ୍ଣା ଅଟଇ ଊର୍ମିମାଳା ତା' ବୁକେ
କ୍ରୋଧ କୁମ୍ଭୀର ତହିଁ ଗୁପତେ ଟାକେ
ଜୀବ ଗ୍ରାସିବ ବୋଲି,
ଲୟରେ ରହିଥାଏ ସେ ସବୁଭୁଲି ।

କଳହ, ତର୍କ, ଘୋର ମେଘ ପବନ
ଟାଳି ଦେଇ ପାରନ୍ତି ଧଇର୍ଯ୍ୟ ଦ୍ରୁମ,
'ମୋହ' ଅଟେ ଆବର୍ତ୍ତ ଚିନ୍ତା ନଦୀରେ
ସଂସରୀ ହୁଏ ଘାରି ପଡ଼ି ତା' ଘେରେ
ମୁନିଋଷି ସକଳ,
ପାରେନି କରି ତାଙ୍କୁ ତୃଷ୍ଣା ଆତୁର ।

•

ତୃଷ୍ଣାଦୂଷଣ ସମାପ୍ତ

# ବିଷୟ ପରିତ୍ୟାଗ ବିଡ଼ମ୍ବନା

ନ ସଂସାରୋତ୍ପନ୍ନଂ ଚରିତମନୁପଶ୍ୟାମି କୁଶଳଂ
ବିପାକଃ ପୁଣ୍ୟାନାଂ ଜନୟତିଭୟଂ ମେ ବିମୃଶତଃ ।
ମହଦ୍ଭିଃ ପୁଣ୍ୟୌଘୈଶ୍ଚିରପରିଗୃହୀତାଶ୍ଚ ବିଷୟା
ମହାନ୍ତୋ ଜାୟନ୍ତେ ବ୍ୟସନମିବ ଦାତୁଂ ବିଷୟିନାଂ । ୧୧ ।

ଦେଖିଲେ ଭବେ ପୁଣ୍ୟ ଫଳ ବିପାକ
ସୃଷ୍ଟି ହୁଅଇ ହୃଦେ ଭୟ ଆତଙ୍କ,
ସଂସାର ଚରିତକୁ ଭାବୁଛି ଯେତେ
ସୁଖ ଭୋଗର ଆଶା ଆସୁନି ପ୍ରତେ ।

ଅଧିକ ଆତଙ୍କିତ ବିଷୟୀଜନ
କରିଛି ପୁଣ୍ୟ ସାଥେ ଯେ ଅପକର୍ମ,
ତା' ଫଳ ଭୋଗିବ ସେ, ନାହିଁ ନିସ୍ତାର
ସକଳ ଭୋଗକ୍ଷେତ୍ର ଅଟେ ସଂସାର ।

ସାଂସାରିକ ପୁଣ୍ୟରେ ନାହିଁ ଭରସା
ଦୋଷ ଦୂଷିତ ଯେଣୁ, ନଥାଏ ଆଶା -
ସୁଫଳ ପାଇଁ,
ମିଶ୍ରିତ ଫଳ ନର ସଦା ଭୋଗଇ ।

ଅବଶ୍ୟଂ ଯାତାରଶ୍ଚିରତରମୁଷିତ୍ୱାଽପି ବିଷୟାଃ
ବିଯୋଗେ କୋ ଭେଦସ୍ତ୍ୟଜତି ନଜନୋ ଯତ୍ସ୍ୱୟମମୂନ୍ ।
ବ୍ରଜନ୍ତଃ ସ୍ୱାତନ୍ତ୍ର୍ୟାଦତୁଳ ପରିତାପାୟ ମନସଃ
ସ୍ୱୟଂ ତ୍ୟକ୍ତା ହ୍ୟେତେ ଶମସୁଖ ମନନ୍ତଂ ବିଦଧତି । ୧୨ ।

ଯାହାକୁ 'ଚିର' ବୋଲି ଭାବଇ ନର
ତାହାତ କେବେ ହେଲେ ନଅଟେ ସ୍ଥିର,
ଆସିଛି ଯାହା, ତାହା ଯିବ ନିଶ୍ଚୟ
ଏ ସତ୍ୟ ଅଟେ ନିତ୍ୟ ପ୍ରକୃତିମୟ ।

ଅଳୀକ ଏ' ବିଷୟ ବାସନାରାଜି
ପ୍ରତାରଣା ଭୋଗଇ ସଂସାରୀ ସାଜି,
ଆସିଛି ଯାହା, ନିଶ୍ଚେ ଯିବ ତା' ଚାଲି
କହି ପାରିବା ନାହିଁ ତା' 'ତ୍ୟାଗ' ବୋଲି !

ସଂସାରୀ ମଣିଷର ଯେ ମାୟାମୋହ
ତ୍ୟାଗ କରିବା ଅଟେ ଅତି ଦୁଃସହ,
ଯଦି ପାରଇ ଟାଳି ସେ ଦୃଢ଼ଚିତ୍ତେ
'ପରମାନନ୍ଦ' ଲଭେ ତା' ହୃଦଗତେ ।
ଏ ଦିବ୍ୟବାଣୀ,
ଅନ୍ୟଥା କେବେ ହେଲେ ନହୁଏ ପୁଣି ।
ସେ କିନ୍ତୁ ହୋଇଥାଏ ଭୋଗରେ ବଣା
ପାରେନା ଟାଳି ନର ଭୋଗ ବାସନା ।

ବ୍ରହ୍ମାଜ୍ଞାନ ବିବେକ ନିର୍ମଳଧିୟଃ କୁର୍ବନ୍ତ୍ୟହୋ ଦୁଷ୍କରଂ
ଯନ୍ମୁଞ୍ଚନ୍ତ୍ୟୁପଭୋଗ ଭାଂଜ୍ୟପି ଧନାନ୍ୟେକାନ୍ତତୋ ନିସ୍ପୃହାଃ,
ସଂପ୍ରାପ୍ତାନ୍ନ ପୁରା ନ ସଂପ୍ରତି ନ ଚ ପ୍ରାପ୍ତୌ ଦୃଢ଼ପ୍ରତ୍ୟୟାନ୍
ବାଞ୍ଛାମାତ୍ର ପରିଗ୍ରହାନପି ପରଂ ତ୍ୟକ୍ତୁଂ ନ ଶକ୍ତା ବୟଂ । ୧୩ ।

ବ୍ରହ୍ମଜ୍ଞାନୀ ତାପସ ସକଳ
ତପୋମଗ୍ନ ଥାନ୍ତି ନିରନ୍ତର ।
ନିର୍ମଳ ବିବେକ ତାଙ୍କ ଉଦାର ହୃଦୟ
କରିଥାନ୍ତି ସେ ଦୁଃସାଧ ଇନ୍ଦ୍ରିୟକୁ ଜୟ
ଭୋଗ ଲାଳସାକୁ,
ପରିହାର କରିଥାନ୍ତି ନିର୍ଲୋଭେ ତାହାକୁ ।

ଭୋଗ ଲିପ୍ସୁ ଏ' ସଂସାରୀ ଜନ
'ଧନ' 'ଧନ' ଭଜେ ତାଙ୍କ ମନ,
ସେମାନେ ଅଟନ୍ତି ସର୍ବେ କାମନା ପିତୁଳା
ଅଲଭ୍ୟ ଲଭିବା ପାଇଁ ତା' ମନ ଉତ୍ତଳା
ଦୁର୍ବାର ଲାଳସା,
ଅତୃପ୍ତ ଅଟଇ ସଦା ତାଙ୍କ ଭୋଗ ଲିପ୍ସା ।
ତପୀଜନସଂସାର ବିରାଗୀ
ତ୍ୟାଗ ଦୃପ୍ତ ବିଭୁ ଅନୁରାଗୀ ।

ଧନ୍ୟାନାଂ ଗିରିକନ୍ଦରେଷୁ ବସତାଂ ଜ୍ୟୋତିଃ ପରଂ ଧ୍ୟାୟତା -
ମାନନ୍ଦାଶ୍ରୁ କଣାନ୍ ପିବନ୍ତି ଶକୁନା ନିଃଶଙ୍କମଙ୍କେଶୟାଃ ।
ଅସ୍ମାକଂ ତୁ ମନୋରଥୋ ପରିଚିତ ପ୍ରାସାଦବାପୀତଟ -
କ୍ରୀଡା କାନନ କେଳି କୌତୁକଜୁଷାମାୟୁଃ ପରଂ କ୍ଷୀୟତେ । ୧୪ ।

ନିଷ୍କାମ ବ୍ରହ୍ମଜ୍ଞାନୀ ଗୁମ୍ଫାରେ ବସି
ଥାଆନ୍ତି ତପୋମଗ୍ନ ସେ ବନବାସୀ,
ନ ଅଟେ ତୃଷ୍ଣାତୁର ହୃଦୟ ତାଙ୍କ
ଶୁଦ୍ଧ ନିର୍ମଳ ମନ ମୁନିଜନଙ୍କ ।

ଅନନ୍ତ ବିହାୟସେ ବିହଙ୍ଗଗଣ
ବିହାର କରିଥାନ୍ତି, ଆନନ୍ଦମନ,
ସନ୍ତୋଷେ ପିଇଥାନ୍ତି ଆନନ୍ଦବାରି
ଶୂନ୍ୟ ବୁକେ ଉଡନ୍ତି ସେ ଶୂନ୍ୟଚାରୀ ।

କାମନା ଜର୍ଜ୍ଜରିତ ସଂସାରୀ ଜନ,
ଭୋଗ ଲିପ୍ସାରେ ସିକ୍ତ ସଦା ତା' ମନ,
ହର୍ମ୍ୟ ନିର୍ମାଣ କରି ସେ ନଦୀତଟେ -
ନିଇତି ଅବଗାହେ ସେ ଭୋଗଘାଟେ ।

ବିଳାସ ବିମୋହିତ ଭ୍ରମର ମନ
ସର୍ବଦା ଘୂରୁଥାଏ କେଳି କାନନ,
ଆୟୁଷ କ୍ଷୟ ହୁଏ ମିଳେନି ଶାନ୍ତି
କାମନା ଉପୁଜାଏ ମନରେ ଭ୍ରାନ୍ତି ।

'ନିଷ୍କାମ' ରହିଥାଏ ସର୍ବଦା ଶାନ୍ତ
'ସକାମ' ମନ ଅଟେ ସଦା ଅଶାନ୍ତ ।

ଭିକ୍ଷାଶନଂ ତଦପି ନୀରସମେକବାରଂ
ଶଯ୍ୟା ଚ ଭୂଃ ପରିଜନୋ ନିଜ ଦେହ ମାତ୍ରଂ,
ବସ୍ତ୍ରଂ ବିଶୀର୍ଣ୍ଣ ଶତଖଣ୍ଡ ମୟୀ ଚ କନ୍ଥା
ହା ହା ତଥାପି ବିଷୟା ନ ପରିତ୍ୟଜନ୍ତି । ୧୫ ।

ମାୟାରେ ମୋହିତ ସଂସାରୀର ମନ
ନିର୍ଦ୍ଧନ ହେଉବା ଅତି,
ଭିକ୍ଷୁକ ହେଉବା ଭିକ୍ଷାନ୍ନ ଭୋଜନେ
ମିଳୁ ବା ନ ମିଳୁ ତୃପ୍ତି
ଦିନକୁ ମିଳୁବା ଥରେ,
ଭଲ ମନ୍ଦ କିଛି ବିଚାର ନଥାଏ
ଯାହା ମିଳୁ ଯେଉଁଠାରେ ।

ଭୂମି ଶଯ୍ୟା ରଚେ ସ୍ୱଜନ ସହିତ
ନ ମିଳଇ ସୁଖ ବାସ,
ଗ୍ରନ୍ଥିଳ ବସନେ ଆଚ୍ଛାଦିତ ତନୁ
ତଥାପି ସେ, ମାୟାବଶ
ଧନ୍ୟ ଏ ମଣିଷ ଜାତି,
ଭୋଗମୟ ଏହି ସଂସାରରେ ସଦା
ମଗ୍ନ ଥାଏ ତା'ର ମତି ।
ସଂସାର ତାହାର ସବୁ,
ମୁକତି ଚାହେଁନା ଲଭିବାକୁ ସିଏ
ସୁଖ ଦୁଃଖ ପରାଭବୁ ।

ସ୍ତନୌ ମାଂସଗ୍ରନ୍ଥୀ କନକ କଲଶା ବିତ୍ୟୁପଚିତୌ
ମୁଖଂ ଶ୍ଲେଷାଗାରଂ ତଦପି ଚ ଶଶାଙ୍କେନ ତୁଳିତଂ ।
ଶ୍ରବନ୍ମୁତ୍ରକ୍ଲିନଂ କରିବର ଶିରଃସ୍ପର୍ଦ୍ଧି ଜଘନଂ
ମୁହୁର୍ନିନ୍ଦ୍ୟଂ ରୂପଂ କବିଜନ ବିଶେଷୈର୍ଗୁରୁ କୃତଂ । ୧୬ ।

ଧନ୍ୟ ସେ କବି,
ଅତି ସିଦ୍ଧହସ୍ତ ଆଙ୍କି ତୋଳିବାକୁ
କଳ୍ପନାର କେତେ ଉଦ୍ଭଟ ଛବି,
ଧନ୍ୟ ସେ କବି ।

ପୟୋଧରୀ ପୟୋଧରକୁ ତୁଳନ୍ତି
କନକ କଳସ ସାଥେ,
ଶ୍ଳେଷ୍ମାଭରା ମୁଖମଣ୍ଡଳଟି ତା'ର
ପୂର୍ଣ୍ଣିମା ଚନ୍ଦ୍ରମା ସତେ ।

ମୂତ୍ର ସିକ୍ତ ନାରୀ ଜଘନକୁ ଦେଖି
ବିହ୍ୱଳ ହୁଅନ୍ତି କବି,
ତୁଳନା କରନ୍ତି କରୀ କୁମ୍ଭ ସାଥେ
ରୂପସାମ୍ୟ ଅନୁଭବି ।

ନାରୀର କୁତ୍ସିତ ରୂପ ଅବୟବ
ତାଙ୍କ ନେତ୍ରେ ଶୋଭାମୟ
ସେତ ଶୋଭାଙ୍ଗିନୀ ରୂପର ତଟିନୀ
ବିଶ୍ୱ ମନ କରେ ଜୟ ।
କବି କରୁଣାରୁ ନାରୀ,
ବିଶ୍ୱବନ୍ଦନୀୟା, ସର୍ବ ପୂଜନୀୟା,
ସେ'ତ ପ୍ରୀତି ପୁଣ୍ୟ ପୁରୀ ।

ଏକୋ ରାଗିଷ୍ଣୁ ରାଜତେ ପ୍ରିୟତମା ଦେହାର୍ଦ୍ଧଧାରୀ ହରୋ
ନୀରାଗେଷ୍ଣୁ ଜନୋ ବିମୁକ୍ତ ଲଲନା ସଙ୍ଗୋ ନ ଯସ୍ମାତ୍ପରଃ ।
ଦୁର୍ବାର ସ୍ମରବାଣପନ୍ନଗ ବିଷ ବ୍ୟାବିଦ୍ଧ ମୁଗ୍ଧୋ ଜନଃ
ଶେଷଃ କାମବିଡ଼ମ୍ବିତାନ୍ନ ବିଷୟାନ୍ ଭୋକ୍ତୁଂ ନମୋକ୍ତୁଂ କ୍ଷମଃ । ୧୭ ।

ଉମାଙ୍କୁ କରିଛନ୍ତି ଧାରଣ ଶିବ
ନିଜ ଶରୀର ଅର୍ଦ୍ଧେ, କି ଅନୁରାଗ ।
କାମୁକ ହୋଇ ମଧ୍ୟ କାମ ବିରାଗୀ
ସଂସାରେ ତାଙ୍କ ପରି କେ ଅଛି ତ୍ୟାଗୀ !

କାମାନ୍ଧ ଅଟନ୍ତି ଏ' ସଂସାରଜନ
କାମ ପୀଡିତ ସଦା ତାଙ୍କରି ମନ,
କନ୍ଦର୍ପ ଶରାହତ କାମ ଜର୍ଜ୍ଜର
କାମ କାମନା ତାଙ୍କ ଅଟେ ଦୁର୍ବାର ।

ସଂଭୋଗ ମଦିରା ସେ କରନ୍ତି ପାନ
ନଥାଏ ସଂଯମତା ଶୃଙ୍ଖଳାଜ୍ଞାନ,
ଅନୁଶାସନ ହୀନ ଶୃଙ୍ଗାର ଶାଳା
ଶୃଙ୍ଗାରୀ ରଚିବାକୁ ଶୃଙ୍ଗାର ଲୀଳା ।

ଭୋଗେ ବା ତ୍ୟାଗେ ତାଙ୍କ ନାହିଁ ଯୋଗ୍ୟତା
ଭୋଗ କାଙ୍ଗାଳ ବୁଝେ କି ନୀତି କଥା ।।

ଅଜ୍ଞାନନ ଦାହାତ୍ମ୍ୟଂ ପତତୁ ଶଲଭ ସ୍ତୀବ୍ର ଦହନେ
ସମୀନୋଽପ୍ୟଜ୍ଞାନାଦ୍ ବଡ଼ିଶୟତମଶ୍ନାତୁ ପିଶିତଂ ।
ବିଜାନନ୍ତୋଽପ୍ୟେତେ ବୟମିହ ବିପଜ୍ଜାଳ ଜଟିଳା
ନ୍ନ ମୁଞ୍ଚାମଃ କାମାନହହ ଗହନୋ ମୋହମହିମା । ୧୮ ।

ତା' ଶିଖା ତୋଳି ଅଗ୍ନି
ହୁଏ ଜ୍ୱଳିତ
ପତଙ୍ଗ ଜାଣେନା ତା'
ଦହନ ଘାତ
ପ୍ରଲୁବ୍ଧ କରେ ତାକୁ ତା' ରୂପଶିଖା
ପତଙ୍ଗ ଦିଏ ଝାସ ସେ ଅଗ୍ନିମୁଖା ।

ମତ୍ସ୍ୟ ଧରାଳୀ ହାତେ
ଧରି ବନଶୀ
ଥୋପ ଲଗାଇ ଛାଡେ
ଜଳରେ ରଶି,
ଲୋଭରେ ମାଛ ଆସି ଗିଳଇ ତାହା
ଶେଷରେ ମୃତ୍ୟୁ ମୁଖେ ପଡ଼ଇ ଆହା ।

ସଂସାରୀ ଜନ ଜାଣେ
ବିଷୟ ମୋହ
ଅଟଇ ତା' ପାଇଁ ତା'
ବିପଦ ବ୍ୟୂହ,
ତଥାପି ଆସକ୍ତ ସେ ଜାଣିବି ତାହା
ତରିବା ପାଇଁ ତା'ର ନଥାଏ ରାହା
ହୁଏ ଦୁଃଖେ ଆକୁଳ,
ଭାବଇ, ଅଟେ ତାହା ଅର୍ଜିତ ଫଳ ।

ତୃଷ୍ଣାଶୁଷ୍ୟତ୍ୟାସ୍ୟେ ପିବତି ସଲିଳଂ ଶୀତ ମଧୁରଂ
କ୍ଷୁଧାର୍ତ୍ତଃ ଶାଲ୍ୟାନ୍ନଂ କବଳୟତି ମାଂସାଦିକଳିତଂ ।
ପ୍ରଦୀପ୍ତେ କାମାଗ୍ନୌ ସୁଦୃଢ଼ତର ମାଲିଙ୍ଗତି ବଧୂଂ
ପ୍ରତୀକାରଂ ବ୍ୟାଧେଃ ସୁଖମିତି ବିପର୍ଯ୍ୟସ୍ୟତି, ଜନଃ । ୧୯ ।

ତୃଷ୍ଣାତୁର ଚାହେଁ ମଧୁର ଜଳ
ଅତି ଶୀତଳ,
ତୃଷା ନିବାରଣ କରେ ସେ ପାଇ
ଆନନ୍ଦେ ଭୋଳ ।

କ୍ଷୁଧାତୁର ଚାହେଁ ମଧୁର ଅନ୍ନ
ମାଂସ ମିଷ୍ଟାନ୍ନ,
ଖାଇ ଶାନ୍ତ କରେ ଉଦର ଜ୍ୱାଳା
ଉଚ୍ଛୁଳା ପ୍ରାଣ ।

କନ୍ଦର୍ପ ପୀଡିତ ବିରହ ତପ୍ତ
ସେ କାମାସକ୍ତ,
ପ୍ରୀତି ସୁହାଗିନୀ ପାଇଲେ ପାଶେ
ହୁଏ ଆଶ୍ୱସ୍ତ ।
ସେ ଘନ ଆଶ୍ଳେଷେ -ପୀଡଇ ତାକୁ,
ବିରହର ତାତି ଲିଭାଇବାକୁ ।

ଏ' ସକଳ ବ୍ୟାଧି, ଏ' ଉପଚାର
ସୁଖ ଶାନ୍ତିପ୍ରଦ ଭାବଇ ନର,
କି' ବିପରୀତ,
ଅଳୀକ ଅଟେ ଯା', ତା' ସତ୍ୟ ନିତ୍ୟ ??

ତୁଙ୍ଗଂ ବେଶ୍ମ ସୁତାଃ ସତାଅଭିମତାଃ ସଂଖ୍ୟାତିଗାଃ ସମ୍ପଦଃ
କଲ୍ୟାଣୀ ଦୟିତା ବୟଶ୍ଚ ନବମିତ୍ୟଜ୍ଞାନ ମୂଢ଼ୋ ଜନଃ ।
ମତ୍ୱା ବିଶ୍ୱମନଶ୍ୱରଂ ନିବିଶତେ ସଂସାର କାରାଗୃହେ
ସଂଦୃଶ୍ୟ କ୍ଷଣ ଭଙ୍ଗୁରଂ ତଦଖିଳଂ ଧନ୍ୟସ୍ତୁ ସଂନ୍ୟସ୍ୟତି । ୨୦ ।

ସଂସାରୀ ଜନ
ଭୋଗ ପାଗଳ ମନ ।
ତା' ଭବ୍ୟ ଅଟ୍ଟାଳିକା ଦେଖିଲେ ନର
ପ୍ରଶଂସା କରିଥାନ୍ତି ହୋଇ ବିଭୋର,
ସମ୍ପଦ ସୁଖ ଶିରୀ ଦେଖି ଅମାପ
ହୁଅନ୍ତି ପ୍ରୀତ, ପ୍ରିୟ ଜଗତ ଲୋକ ।

ପାଖରେ ଥାଏ ପ୍ରିୟା ନବଯୁବତୀ
କଲ୍ୟାଣୀ ସୁଧାମୟୀ ସେ ପ୍ରୀତିମତୀ,
ଏ ସବୁ କିନ୍ତୁ ସଦା କ୍ଷଣ ଭଙ୍ଗୁର
ଛାଡିବାକୁ ଚାହେଁନା ଏ କାରାପୁର ।

ଭୋଗଭବନ
ବିଭୋର ମନ ।
ସଂସାର ବିରାଗୀ, ଶାନ୍ତି ଭୋଗେ ଏ ଭବେ
ଅମାପ ଦୁଃଖ କଷଣ ସଂସାରୀ ଲଭେ ।

•

# ଯାଚ୍ଞା ଦୈନ୍ୟ ଦୂଷଣ

ଦୀନା ଦୀନମୁଖୈଃ ସଦୈବ ଶିଶୁକୈରାକୃଷ୍ଟ ଜୀର୍ଣ୍ଣାମ୍ବରା
କ୍ରୋଶଭିଃ କ୍ଷୁଧିତୈ ର୍ନିରନ୍ନବିଧୁରା ଦୃଶ୍ୟା ନ ଚେଦ୍ଗେହିନୀ ।
ଯାଚ୍ଞାଭଙ୍ଗ ଭୟେନ ଗଦ୍‌ଗଦ ଗଳତ୍ତ୍ରୁଟ୍ୟଦ୍ବିଲୀନାକ୍ଷରଂ
କୋ ଦେହୀତି ବଦେତ୍ସ୍ୱ ଦଗ୍ଧଜଠରସ୍ୟାର୍ଥେ ମନସ୍ୱୀ ପୁମାନ୍ । ୨୧ ।

ସେ ଦୀନଜନ
କ୍ଷୁଧା ନଳେ ଦଗ୍ଧ ତା'ର ସନ୍ତାନ ।
ମାତା ମୁଖ ଚାହିଁ ବିକଳ ହୋଇ
ଅଳି କରୁଥାନ୍ତି ସେ' ଖାଦ୍ୟ ପାଇଁ,
ଟାଣୁଥାନ୍ତି ତା'ର ଜୀର୍ଣ୍ଣବସନ
ଦିଅ ମା'....ଦିଅ ମା' ମୁଖରେ ଅନ୍ନ ।

ବିଗଳିତ ମାତୃ ହୃଦୟ ତା'ର
ପିଲାଙ୍କ ମୁହଁରେ ଦେଇ ପାରୁନାହିଁ ଅନ୍ନଜଳ ।
କାହାକୁ ମାଗିବ ସେ ହାତପାତି,
ଯାଚନା ତାହାର କେ' ରକ୍ଷା କରିବ
କରୁଣା କୋମଳ କାହାରମତି !

ପ୍ରାର୍ଥନା ତାହାର ବ୍ୟର୍ଥ ହେବନି ତ
ଉଦ୍‌ବେଗ ମନେ,
ମାଗିପାରୁନି କି ନ ମାଗି ପାରୁନି
ଇତର ଜନେ ।
ଦେବେ କି ନ ଦେବେ, ଲଜ୍ଜାପାଟଳ ମୁଖଟି ତା'ର
"ଦିଅ ମୁଠେ" ବୋଲି ତଥାପି ମାଗିଲା, ଅନୁଚ୍ଚ ସ୍ୱର ।
ସେ' ତ ସଜ୍ଜନ
ବୁଝିବେ ମନ ।।

ଅଭିମତ ମହାମାନଗ୍ରନ୍ଥି ପ୍ରଭେଦ ପଟୀୟସୀ
ଗୁରୁତର ଗୁଣଗ୍ରାମାଂ ଭୋଜ ସ୍ଫୁଟୋଜ୍ଜ୍ୱଳ ଚନ୍ଦ୍ରିକା
ବିପୁଳ ବିଳସଲ୍ଲଜା ବଲ୍ଲୀ ବିତାନ କୁଠାରିକା
ଜଠରପିଠରୀ ଦୁଷ୍ପୂରେୟଂ କରୋତି ବିଡ଼ମ୍ବନାଂ ।୨୨ ।

ଅନାହାର ପ୍ରପୀଡ଼ିତ ଯାହାର ଜୀବନ
ସକଳ ଦୁର୍ବିପାକର ସେ ଅଟେ କାରଣ,
ମାନ, ସମ୍ମାନ, ସମ୍ଭ୍ରମ ନଥାଏ ତା' କିଛି
ଉଦରେ ତା' ଲହରିତ ଦୃପ୍ତ କ୍ଷୁଧା ବୀଚି ।

ଚନ୍ଦ୍ରାଲୋକେ ପଦ୍ମବନ ମୁଦ୍ରିତ ଯେସନ
ସୁପ୍ତ ରହିଯାଏ ତା'ର ସକଳ ସୁଗୁଣ-
ଲାଜକୁଳିଲତା ସମ ବିପୁଳ ବିସ୍ତାର,
ତା' ପାଇଁ କି ଲୋଡ଼ା ହୁଏ କଠିନ କୁଠାର
କ୍ଷୁଧାର ତାଡ଼ନା,
ସୃଷ୍ଟିକରେ ତା' ଜୀବନେ ମହା ବିଡ଼ମ୍ବନା ।

ପୁଣ୍ୟେ ଗ୍ରାମେ ବନେ ବା ମହତି ସିତପଟଚ୍ଛନ୍ନପାଳିଂ କପାଳିଂ
ହ୍ୟାଦାୟ ନ୍ୟାୟ ଗର୍ଭଦ୍ୱିଜହୁତ ହୁତଭୁଗ୍‌ଧୂମ ଧୂମ୍ରୋପକଣ୍ଠେ ।
ଦ୍ୱାରଂ ଦ୍ୱାରଂ ପ୍ରବିଷ୍ଟୋ ବରମୁଦରଦ ରୀପୂରଣାୟ କ୍ଷୁଧାର୍ତ୍ତୋ
ମାନୀ ପ୍ରାଣୈଃ ସନାଥୋ ନ ପୁନରନୁଦିନ ତୁଲ୍ୟ କୁଲ୍ୟେଷୁ ଦୀନଃ । ୨୩ ।

ଶରୀରେ ଶୋଭି ଶୁଭ୍ର ବସ୍ତ୍ର ଭୂଷଣ
କପାଳ ପଟେ ମାଖି ଶୁଭ୍ର ଚନ୍ଦନ,
ହୁଅନ୍ତୁ ଯେତେ ବିଜ୍ଞ ସେ ବିପ୍ରବର
କ୍ଷୁଧାର୍ତ୍ତ ହେଲେ ଘୋଟେ ଧୂମ ପଟଳ ।

ଅସହ୍ୟ ଗର୍ଭଜ୍ୱାଳା ତୀବ୍ର ପୀଡ଼ନା
କରିଥାଏ ତାହାଙ୍କ ବିବେକ ବଣା,
ଚତୁର୍ଦ୍ଦିଗ ତାହାଙ୍କୁ ଦିଶେ ଅନ୍ଧାର
ଅଟନ୍ତି ସିଏ କ୍ଷୁଧା ତୃଷା ଆତୁର ।

ଅନ୍ନ ଓ ଜଳ ପାଇଁ ଯଦି ସେ ଦ୍ୱିଜ
ଭ୍ରମନ୍ତି ବନେ ଗ୍ରାମେ ତୁଟାଇ ଲାଜ,
ମାଗନ୍ତି ହାତପାତି ଭିକ୍ଷାନ୍ନ ସିଏ
ତାହାଙ୍କୁ ଅପରାଧୀ ଭାବିବ କିଏ !!

କ୍ଷୁଧାର୍ତ୍ତ ବୋଲି ଯାଇ ବାନ୍ଧବ ଦ୍ୱାରେ
ହାତପାତିବା ନୁହେଁ ଯଥାର୍ଥ କାରେ,
ପ୍ରକାଶ କରନାହିଁ ଦୀନତା ତହିଁ
ଲଜ୍ଜା ସମ୍ଭ୍ରମ ସ୍ୱାଭିମାନ ତୁଟାଇ ।

**ଗଙ୍ଗା ତରଙ୍ଗକଣ ଶୀକର ଶୀତଳାନି**
**ବିଦ୍ୟାଧରା ଧ୍ୟୁଷିତ ଚାରୁ ଶିଳାତଳାନି ।**
**ସ୍ଥାନାନି କିଂ ହିମବତଃ ପ୍ରଳୟଂ ଗତାନି**
**ଯତ୍ସାବମାନ ପର ପିଣ୍ଡରତା ମନୁଷ୍ୟାଃ ।୨୪ ।**

ଗଙ୍ଗାର ତରଙ୍ଗ କଣିକା ଶୀକର -
ଶୀତଳ ସମୀର ଝରା,
ହିମର ଆଳୟ ଅଟେ ହିମାଳୟ
ଦେବ ଲୋକ ଦେବଶାଳା ।
ସେ ସବୁକି ହେଲା ଗତ
ମଣିଷ ହୁଡିଛି ନିଜ ଶ୍ରେୟ ପଣ
ପରାନ୍ନେ ସଦା ଭୁଞ୍ଜିତ ।
ଏତ ବିଧି ବିଡ଼ମ୍ବନା
ଅସମ୍ଭବ ସବୁ ସମ୍ଭବ ହୁଅଇ ସିନା ।

କିଂ କନ୍ଦାଃ କନ୍ଦରେଭ୍ୟଃ ପ୍ରଳୟମୁପଗତା ନିର୍ଝରା ବା ଗିରିଭ୍ୟଃ
ପ୍ରଧ୍ୱସ୍ତାବାତରୁଭ୍ୟଃ ସରସଫଳଭୃତୋ ବଲ୍କଳିନ୍ୟଶ୍ଚ ଶାଖାଃ ।
ବୀକ୍ଷନ୍ତେ ଯନ୍ମୁଖାନି ପ୍ରସଭମପଗତ ପ୍ରଶ୍ରୟାଣାଂ ଖଳାନାଂ
ଦୁଃଖାପ୍ତ ସ୍ୱଳ୍ପବିତ୍ତସ୍ମୟ ପବନବଶାନର୍ତ୍ତିତ ଭ୍ରୂଲତାନି । ୨୫ ।

ସଂସାରେ ବ୍ୟତିକ୍ରମ ଘଟଇ ନିତି
ସଢ଼େବା ବିପରୀତ ସଂସାର ଗତି,
ଗିରିନିର୍ଝର ଜଳଶୂନ୍ୟ କି ହେଲା
କନ୍ଦରେ, କନ୍ଦ କନ୍ଦମୂଳ ନହେଲା ।

ସୁନ୍ଦର ଫୁଲ ଅବା ରସାଳ ଫଳେ
ମଣ୍ଡିତ ନ ହୁଅନ୍ତି ବୃକ୍ଷ ସକଳେ,
ବଲ୍‌କଳ ଶାଖା ଶୂନ୍ୟ ଅଟନ୍ତି ତରୁ
ସତେକି ଶିରୀ ହରା, ଦିଶଇ ମରୁ ।

ଦୃପ୍ତ ଚାହାଣି ତୋଳି ଦୁର୍ଜନ ଚାଲେ
ଗର୍ବ ମରୁତ ତା'ର ମୁଖ ପଖାଳେ,
ସାମାନ୍ୟ ଧନ ପାଇଁ ଯାଚକ ଜନ
ବିକଳେ ଚାହିଁ ଥାଏ ତା'ର ନୟନ -
କି ବ୍ୟତିକ୍ରମ,
ସତେ ବା' ଏହା ଅଟେ ସଂସାର ଧର୍ମ !

ପୁଣ୍ୟୈର୍ମୂଳ ଫଳୈସ୍ତଥା ପ୍ରଣୟିନୀଂବୃତ୍ତିଂ କୁରୁଷ୍ୱାଧୁନା
ଭୂଶଯ୍ୟାଂ ନବପଲ୍ଲବୈରକୃପଣୈରୁତ୍ତିଷ୍ଠ ଯାବୋ ବନଂ
କ୍ଷୁଦ୍ରାଣାମବିବେକ ମୂଢ଼ ମନସାଂ, ଯତ୍ରେଶ୍ୱରାଣାଂ ସଦା
ଚିତ୍ତବ୍ୟାଧି ବିକାର ବିହ୍ୱଳଗିରାଂ ନାମାପି ନ ଶ୍ରୂୟତେ । ୨୬ ।

ଯେ ରାଜା ମୂଢ଼ ମତି ବିବେକ ହୀନ
ଅଶାନ୍ତ ଅଟେ ସଦା ସଂକୀର୍ଣ୍ଣ ମନ,
ବ୍ୟାଧି ବିକାରଗ୍ରସ୍ତ ଅଟେ ତା' ଚିତ୍ତ
ବଚନ ଅଟେ ତା'ର ଅତି କୁତ୍ସିତ ।

ଆବୋରି ବାକୁ ଧନ ବ୍ୟାକୁଳ ସଦା
କୃପଣ ଅଟେ କିଛି ନଦିଏ କଦା,
ସର୍ବଦା ଅପକର୍ମେ ଲିପ୍ତ ତା' ମନ
ଜପୁଥାଏ ସତତ ସେ ଧନ ଧନ

ରହ, ତା'ଠାରୁ ଦୂରେ
ଶୁଣନା ପାପୀ ନାମ ଶ୍ରବଣ ପୁରେ ।

ଫଳଂ ସ୍ୱେଚ୍ଛାଲଭ୍ୟଂ ପ୍ରତିବନ ମଖେଦଂ କ୍ଷିତିରୁହାଂ
ପୟଃ ସ୍ଥାନେ ସ୍ଥାନେ ଶିଶିର ମଧୁରଂ ପୁଣ୍ୟ ସରିତାଂ ।
ମୃଦୁ ସ୍ପର୍ଶା ଶଯ୍ୟା ସୁଲଳିତ ଲତା ପଲ୍ଲବମୟୀ
ସହନ୍ତେ ସନ୍ତାପଂ ତଦପି ଧନିନାଂ ଦ୍ୱାରି କୃପଣାଃ । ୨୭ ।

ବିପୁଳ ତରୁ ତୃଣେ
ମଣ୍ଡିତ ବନ ଭୂମେ
ତଟିନୀ କୁଳୁ କୁଳୁ ବହଇ,
ତା' ଚିତ୍ତ ହରେ ବନ
ମନ ତା' ଛନ୍ନ ଛନ୍ନ
ନାଚି ନାଚି ସେ ମୁଦେ ଚଳଇ ।

ଶ୍ୟାମଳ ବନ ଶୋଭା
ଅଟେ କି ମନ ଲୋଭା
ଛାୟା ଶୀତଳ ତରୁ ତରୁଣୀ,
ଅରପେ ନାନା ଫୁଲ
ମଧୁର ଫଳ ମୂଳ
ଶୀତଳ କୋଳ ଶାନ୍ତି ଦାୟିନୀ ।

ଲତା ପଲ୍ଲବମୟୀ
ଲଳିତ ରୂପମୟୀ
ଡାକଇ ଆଖି ଠାରି ତା'ପୁରେ,
ଆସ ଆସ ରସିକ
ଶୃଙ୍ଗାରୀ ଶୃଙ୍ଗାରକ
ସୁରତ ସଙ୍ଗୀତର ତାନରେ ।

କି ଧନୀ କି ଗରିବ
ସରବେ ସମ ଭାବ,
ପ୍ରକୃତି ସଦା ଶୋଭା ମନ୍ଦିର,
ଲିଭାଏ କ୍ଷୁଧା ତୃଷା
ପୂରାଏ ସବୁ ଆଶା -
ତଥାପି ଧନଲୋଭେ ଅଧିର ।

ଯାଆନ୍ତି କିମ୍ପା ଧନୀ ଦୁଆରେ,
ପାତନ୍ତି ହାତ ତାଙ୍କ
କରେ ସେ ମୁହଁ ବାଙ୍କ
ଫେରନ୍ତି ଅପମାନ ଦୁଃଖରେ ।।

ଯେ ବର୍ତ୍ତନ୍ତେ ଧନପତି ପୁରଃ ପ୍ରାର୍ଥନା ଦୁଃଖଭାଜୋ
ଯେ ଚାଲ୍ପତ୍ୱଂ ଦଧତି ବିଷୟାକ୍ଷେପ ପର୍ଯ୍ୟାପ୍ତ ବୁଦ୍ଧେଃ ।
ତେଷାମନ୍ତଃ ସ୍ଫୁରିତ ହସିତଂ ବାସରାଣି ସ୍ମରେୟୁ -
ର୍ଧ୍ୟାନଚ୍ଛେଦେ ଶିଖରି କୁହର ଗ୍ରାବ ଶଯ୍ୟା ନିଷଣ୍ଣ ।୨୮ ।

ଅଛନ୍ତି ଏ' ସଂସାରେ ଏପରି ଜନ
ଧନିକ ପାଶେ ଯାଇ ହୋଇ ନିଉନ,
ବିଷୟାସକ୍ତ ହୋଇ କରି ଯାଚନା
ନିଜ ସମ୍ମାନ ନିଜେ କରନ୍ତି ଊଣା -
ଉପହସିତ,
ହୁଅନ୍ତି ବୁଦ୍ଧିହୀନ ସେ ଲଘୁଚିତ୍ତ ।

ସଂସାର ବିରାଗୀ ସେ ତାପସ ଗଣ
ବ୍ରହ୍ମ ଧିଆନେ ସଦା ଚିତ୍ତ ମଗନ,
ତୃପତ ମନ ବନ ଫଳ ଆହାରେ
କରନ୍ତି ଶୟନ ସେ ଗିରି ଗୁହାରେ
କରି ସ୍ମରଣ,
ଦୀନ ଦୁଃଖୀର ଦୁଃଖ, ସେ ମୁହ୍ୟମାନ ।

ଅସାର ଏ' ସଂସାର ଏ' ମୋହମାୟା
ମୂଢ଼ ମାନବ କିମ୍ପା ହୁଅଇ ବାୟା !

ଯେ ସନ୍ତୋଷ ନିରନ୍ତର ପ୍ରମୁଦିତା ସ୍ତେଷାଂ ନ ଭିନ୍ନା ମୁଦୋ
ଯେ ତ୍ୱନ୍ୟେ ଧନଲୁବ୍ଧସଙ୍କୁଳଧିୟ ସ୍ତେଷାଂ ନ ତୃଷ୍ଣା ହତା ।
ଇତ୍ଥଂ କସ୍ୟକୃତେ କୃତଃ ସ ବିଧିନା କୀଦୃକ୍‌ପଦଂ ସମ୍ପଦାଂ
ସ୍ୱାତ୍ମନ୍ୟେବ ସମାପ୍ତ ହେମମହିମା ମେରୁର୍ନମେ ରୋଚତେ ।୨୯ ।

ପରିତୋଷେ ତୁଷ୍ଟ ଯେହୁ
ସନ୍ତୋଷ ତାହାର,
ବିନାଶ ନ ହୁଏ କେବେ
ସେ ସୁଧା ସମ୍ଭାର ।
ବିଷୟେ ଆସକ୍ତ ଯେହୁ, ତା'ର ତୃଷ୍ଣା କେବେ
ଶାନ୍ତି ହୋଇ ପାରେ ନାହିଁ ଭୋଗମୟ ଭବେ
ସମ୍ପଦର ମହିମା ଅପାର
ଭୋଗ ଭୂମେ କେ କରିବ ଦୂର ।

ହେମମୟ ଗିରି ଅଟେ ସମ୍ପଦ ଭଣ୍ଡାର
କରି ପାରେନାହିଁ ଯଦି ପର ଉପକାର,
ବିଶ୍ୱ ସ୍ରଷ୍ଟାଙ୍କ ସର୍ଜନା ହେଉ ଅବା ତାହା
ମୋ ମନେ ଦିଏନି ଶାନ୍ତି ଅନାଦୃତ ଯାହା
ହେଉ ଅବା ପ୍ରକୃତିର ଦାନ,
ପରିତୁଷ୍ଟ ନୁହେଁ ମୋର ମନ ।

ଭିକ୍ଷାହାର ମଦୈନ୍ୟମ ପ୍ରତିସୁଖଂ ଭୀତିଚ୍ଛିଦଂ ସର୍ବତୋ
ଦୁର୍ମାତ୍ସର୍ଯ୍ୟମଦାଭିମାନମଥନଂ ଦୁଃଖୌଘବିଧ୍ୱଂସନଂ ।
ସର୍ବତ୍ରାନ୍ୱହମ ପ୍ରଯତ୍ନସୁଲଭଂ ସାଧୁପ୍ରିୟଂ ପାବନଂ
ଶମ୍ଭୋଃ ସତ୍ତ୍ର ମବାର୍ଯମକ୍ଷୟନିଧିଂ ଶଂସନ୍ତି ଯୋଗୀଶ୍ୱରା ।୩୦ ।

ଷଡ ସଦ୍‌ଗୁଣେ ସଦା ଯେ ଅଧିକାରୀ
ଭିକ୍ଷାନ୍ନେ ପରିତୁଷ୍ଟ ସେ ବ୍ରତଚାରୀ,
ମନରେ ତାଙ୍କ କେବେ ନଥାଏ ଦୈନ୍ୟ
ପରମ ଆନନ୍ଦରେ ମଜ୍ଜିତ ମନ ।

ମୁଗ୍ଧ ମୋହିତ ମନ ନଥାଏ ଭୟ
ସେ ସତ୍ୟ ଅନୁରାଗୀ, କରନ୍ତି ଜୟ -
ନିଖିଳ ମନ,
ଲଭନ୍ତି ସୁଖ ଶାନ୍ତି ପରମ ଧନ ।

ଯୋଗୀ ଜନଙ୍କ ପ୍ରିୟ ଅଟନ୍ତି ସିଏ
ପାବନ ପଥେ ଯାତ୍ରା କରନ୍ତି ଯିଏ ।
ପ୍ରଭୁ ଶଙ୍କରଙ୍କର ସନ୍ତୋଷ ଲଭି -
ଥାଆନ୍ତି ସଦାଚାରୀ ବ୍ରତାନୁରାଗୀ
ସେ କର୍ମଯୋଗୀ,
ସଂସାରେ ଥାଇ ମଧ୍ୟ ସଂସାର ତ୍ୟାଗୀ ।

•

ଯାଚଞ୍ଚା ଦୈନ୍ୟ ଦୂଷଣ ସମାପ୍ତ

# ଭୋଗାସ୍ଥୈର୍ଯ୍ୟ ବର୍ଣ୍ଣନା

ଭୋଗେ ରୋଗଭୟଂ କୁଳେ ଚ୍ୟୁତିଭୟଂ ବିତ୍ତେ ନୃପାଳାଦ୍‌ଭୟଂ
ମାନେ ଦୈନ୍ୟଭୟଂ ବଳେ ରିପୁଭୟଂ ରୂପେ ଜରାୟା ଭୟଂ ।
ଶାସ୍ତ୍ରେ ବାଦିଭୟଂ ଗୁଣେ ଖଳ ଭୟଂ କାୟେ କୃତାନ୍ତାଭୟଂ
ସର୍ବଂବସ୍ତୁ ଭୟାନ୍ୱିତଂ ଭୁବି ନୃଣାଂ ବୈରାଗ୍ୟ ମେବାଭୟଂ । ୩୧ ।

ଅଳୀକ ସଂସାର, ଭୟ ପାରାବାର
ଭୟରେ ଭ୍ରମିତ ସର୍ବେ,
କାହାର ସାହସ ନାହିଁ ଚାଲିବାକୁ
ଦମ୍ଭ ଅଭିମାନ ଗର୍ବେ ।

ଭୋଗେ ରୋଗଭୟ କୁଳେ ଚ୍ୟୁତିଭୟ
ଧନେ ରାଜଭୟ ସଦା,
ମାନେ ଦୈନ୍ୟଭୟ, ବଳେ ରିପୁ ଭୟ
ରୂପେ, ଜରା ଭୟପ୍ରଦା ।

ଶାସ୍ତ୍ରେ ବାଦଭୟ ବିତର୍କ ବିପାକ
ଗୁଣେ ଥାଏ ଖଳ ଭୟ,
ମରଣର ଭୟ ଥାଏ ଏ' ଜୀବନେ
କେ କରିପାରିବ ଜୟ !

ଭୟରେ ଭରିଛି ନିଖିଳ ଜଗତ
ଏକା ଭୟ ନାହିଁ ତା'ର,
ଯେ ଅଟେ ବୈରାଗୀ ସତ୍ୟ ଅନୁରାଗୀ
ସଚ୍ଚରିତ୍ର ଶୁଦ୍ଧାଚାର ।

ଆକ୍ରାନ୍ତଂ ମରଣେନ ଜନ୍ମ ଜରସା ଚାତ୍ୟୁଜ୍ଜ୍ୱଳଂ ଯୌବନଂ
ସନ୍ତୋଷୋ ଧନଲିପ୍‌ସୟା ଶମସୁଖଂ ପ୍ରୌଢ଼ାଙ୍ଗନାବିଭ୍ରମୈଃ ।
ଲୋକୈ ର୍ମତ୍ସରିଭିର୍ଗୁଣା ବନଭୁବୋ ବ୍ୟାଳୈର୍ନୃପା ଦୁର୍ଜ୍ଜନୈ -
ରସ୍ଥୈର୍ଯେଣ ବିଭୂତୟୋଽପ୍ୟୁପହତା ଗ୍ରସ୍ତଂ ନକିଂ କେନବା । ୩୨ ।

ଏପରି ନାହିଁ କିଛି ସଂସାରେ ସାର
ଯାହାକୁ କରେ ନାହିଁ ସମୟକ୍ରୁର,
ଜନ୍ମ ହୋଇଲେ ହେବ ନିଶ୍ଚେ ମରଣ
ଜରା ନାଶିବ ଦିନେ ଭରା ଯୌବନ ।

ଧନ ଲିପ୍‌ସାରେ ହୁଏ ସନ୍ତୋଷ ଲୋପ
ସଙ୍ଗମେ ଲୋପ ହୁଏ ସଂଯମ ସୁଖ,
ଦୁଷ୍ଟ ଗଜ ମାନେନା ଦୁର୍ଗମ ବନ
ଅସହିଷ୍ଣୁତା ନାଶଇ ସର୍ବ ସୁଗୁଣ ।

ସମ୍ପତ୍ତି, ହରିନିଏ ଦୁର୍ଜ୍ଜନ ରାଜା
ଶୋଷଣ କରିଥାଏ ସମସ୍ତ ପ୍ରଜା,
ସଂସାରେ ନାହିଁ ଏଥି ଏପରି କିଛି
ଆକ୍ରାନ୍ତ ନ ହୋଇ ସେ ରହଇ ବଞ୍ଚି
ଯା' ଅଭ୍ୟୁଦୟ,
ଦିନେ ନା ଦିନେ ତାହା ହୋଇବ କ୍ଷୟ ।

ନପାରେ ବୁଝିନର ଏ' ମହାସତ୍ୟ
ତଥାପି ଭୋଗ ପାଇଁ ସେ ବ୍ୟାକୁଳିତ,
ବାସନା ଅଗ୍ନିଶିଖା ଊର୍ଦ୍ଧ୍ୱକୁ ଉଠେ
ହୁଏ ତା' ନିର୍ବାପିତ ମରଣ ସାଥେ ।

ଆଧିବ୍ୟାଧି ଶତୈର୍ଜନସ୍ୟ ବିବିଧୈରାରୋଗ୍ୟ ମୁନ୍ମୁଲ୍ୟତେ
ଲକ୍ଷ୍ମୀର୍ଯତ୍ର ପତନ୍ତି ତତ୍ର ବିବୃତଦ୍ୱାରା ଇବ ବ୍ୟାପଦଃ
ଜାତଂ ଜାତ ମବଶ୍ୟମାଶୁ ବିବଶଂ ମୃତ୍ୟୁଃ କରୋତ୍ୟାତ୍ମସା -
ଉକ୍ତିଂତେନ ନିରଙ୍କୁଶେନ ବିଧିନା ଯନ୍ନିର୍ମିତଂ ସୁସ୍ଥିରଂ ।୩୩ ।

ଶରୀର ମାନସର ବିପୁଳ ବ୍ୟାଧି
ମଣିଷ କରିପାରେ ଦୂର ଅବଧି
ନିର୍ମୂଳ ଅବା,
ପ୍ରୟୋଗ କରି ତା'ର ଶକ୍ତିର ପ୍ରଭା ।

ସମ୍ପଦ ଯହିଁ ଥାଏ, ଥାଏ ବିପଦ
ଜନ୍ମ ଜନ୍ମାନ୍ତେ ଭୋଗିଥାଏ ଜଗତ
ଅନ୍ୟଥା ଏହା,
କେ କରିପାରେ ବିଧି ବ୍ୟବସ୍ଥା ଯାହା ।

ଯମର ପରାଧୀନ ଅଟେ ସଂସାର
କ୍ଷଣସ୍ଥାୟୀ ଅନିତ୍ୟ ଏହା ଅସ୍ଥିର
ନରହେ ସ୍ଥିତି,
କାଳ କରଇ ସ୍ୱାହା ତା' ପରିଚିତି ।

ସଂସାରେ ଏକା ସ୍ଥିର ବିଧି ବିଧାନ
ତାହାକୁ କରି ପାରନ୍ତିନି କେ ଆନ
ସେ ମହାସତ୍ୟ,
ଅନିତ୍ୟ ମଧ୍ୟେ ଏହା ଜଗତେ ନିତ୍ୟ ।

ଭୋଗାସ୍ତୁଙ୍ଗ ତରଙ୍ଗ ଭଙ୍ଗତରଳାଃ ପ୍ରାଣାଃ କ୍ଷଣଧ୍ୱଂସିନଃ
ସ୍ତୋକା ନ୍ୟେବ ଦିନାନି ଯୌବନ ସୁଖସ୍ଫୂର୍ତ୍ତିଃ ପ୍ରିୟାସୁ ସ୍ଥିତା,
ତତ୍ସଂସାର ମସାର ମେବ ନିଖିଳଂ ବୃଦ୍ଧ୍ୱା ବୁଧା ବୋଧକା
ଲୋକାନୁଗ୍ରହ ପେଶଳେନ ମନସା ଯତ୍ନଃ ସମାଧୀୟତାଂ । ୩୪ ।

ସଂସାରର ଅନିତ୍ୟତା କ'ରେ ଅଗୋଚର
ସମୁଚ୍ଚ ତରଙ୍ଗ ସମ ଜୀବନ ଚଞ୍ଚଳ,
ନଶ୍ୱର ଅଟଇ ସଦା ସଂସାରର ଲୀଳା
ଅତି କ୍ଷଣସ୍ଥାୟୀ ଯଥା ତରଙ୍ଗ ଉଚ୍ଛଳା ।

ଏ ଜୀବନ, ଏ ଯୌବନ, ଅଟଇ ଚଞ୍ଚଳ
ପ୍ରିୟାର ସୁରତ ସୁଖ ସମ୍ଭୋଗ ସକଳ,
ଏ' ସମସ୍ତ ଯାଏ ଚାଲି ସ୍ମୃତି ରହେ ଖାଲି
ପ୍ରୀତିର ପୁଲକ ଯାଏ ଅଚିରେ ମଉଳି ।

ସଂସାରର ନଶ୍ୱରତା ବିଚାରି ବିବୁଧ
କର ତ୍ୟାଗ ମୋହ ମାୟା ନହୁଅ ପ୍ରଲୁବ୍ଧ,
ବ୍ରହ୍ମ ଉପାସନା ମଧ୍ୟେ ହୋଇଯାଅ ଲୀନ
ବ୍ରହ୍ମପଦେ ଏ ଜୀବନ କର ସମର୍ପଣ ।

ସେ ପଦରେ ରହୁ ସଦା ଲୟ
ତୁଟିଯିବ ମନୁ ଭବଭୟ ।

ଭୋଗା ମେଘବିତାନ ମଧ୍ୟ ବିଳସ ସୌଦାମିନୀ ଚଞ୍ଚଳା
ଆୟୁର୍ବାୟୁ ବିଘଟ୍ଟିତାବ୍ଧ ପଟଳୀ ଲୀନାମ୍ବୁବଦ୍ ଭଙ୍ଗୁରଂ ।
ଲୀଳା ଯୌବନ ଲାଳସା ସ୍ତନୁଭୃତା ମିତ୍ୟା କଳଯ୍ୟ ଦ୍ରୁତଂ
ଯୋଗେ ଧୈର୍ଯ୍ୟ ସମାଧି ସିଦ୍ଧ ସୁଲଭେ ବୁଦ୍ଧିଂ ବିଧଦ୍ଧ୍ୱଂ ବୁଧାଃ ।୩୫ ।

ଭୋଗମୟ ସଂସାରେ
ଭୋଗର ବାରିଧିରେ
ମଗ୍ନ ମଣିଷ ମନ ସତତ,
ତା' ଆୟୁସ ପବନ
ମେଘେ ବିଦ୍ୟୁତ ସମ
ଅଟଇ କ୍ଷଣସ୍ଥାୟୀ, ବିରତ -
ହୁଏତା ନିରବରେ ସଧୀରେ,
ଯଥା ନଳିନୀ ବନ ଉଜୁଡି ଯାଏ ଶୀତ ଶୀକରେ ।

ଜୀବନ ଯଉବନ
ସବୁ ଅସ୍ଥିର ପୁଣ
ମୋହ ମୋହିତ କିମ୍ପା ଏ'ମନ,
ଏକଥା ଜାଣି ଯୋଗୀ
ହୁଏ ଯୋଗାନୁରାଗୀ
ସ୍ଥିର ଚିତ୍ତରେ ଯୋଗେ ମଗନ,
ଲଭଇ ସିଦ୍ଧି ଆଉ ସମାଧି
ଅସାର ସଂସାରରେ ଅଟଇ ବିରଳ ଏ' ବିଭୂତି ।

ଆୟୁଃକଲ୍ଲୋଳଲୋଳଂ କତିପୟଦିବସସ୍ଥାୟିନୀ ଯୌବନଶ୍ରୀ
ରର୍ଥାଃ ସଂକଳ୍ପକଳ୍ପା ଘନସମୟ ତଡିଦ୍ ବିଭ୍ରମା ଭୋଗପୂଗାଃ ।
କଣ୍ଠାଶ୍ଳେଷୋପଗୂଢ଼ଂ ତଦପିଚ ନ ଚିରଂ ଯତ୍ପ୍ରିୟାଭିଃ ପ୍ରଣୀତଂ
ବ୍ରହ୍ମଣ୍ୟା ସକ୍ତଚିତ୍ତା ଭବତ ଭବଭୟାମ୍ଭୋଧି ପାରଂ ତରୀତୁଂ । ୩୬ ।

ପ୍ରବଳ ବେଗେ ବହିଯାଏ ତଟିନୀ
ତା'ତଟେ ଉଭା ଶୋଭା ସେ ପାଦପିନୀ,
ସହେ ତରଙ୍ଗାଘାତ ସେ ବାରବାର
କେତେବେଳେ ଉପୁଡ଼ି ଯିବ ତା' ଚେର ।

ଜୀବନ ଯଉବନ ଧନ ସମ୍ପତ୍ତି
ପ୍ରିୟା କଣ୍ଠ ଆଶ୍ଳେଷ, ସମ୍ଭୋଗ ପ୍ରୀତି,
ଅଟଇ ତରଙ୍ଗିଣୀ ତଟ ପାଦପ
କେତେବେଳେ ସେ ତରୁ ହୋଇବ ଲୋପ ।

ଅଟେ କ୍ଷଣ ଭଙ୍ଗୁର, ଯା' ମନଲୋଭା
ଜୀବନ, ଯଉବନ, ସମ୍ଭୋଗ ସଭା,
ଜାଣନ୍ତି ସାଧୁଜନ ଏହାର ଗତି
ସଂସାର ବିରାଗୀ ସେ ହୁଅନ୍ତି ଯତି ।

ବ୍ରହ୍ମ ସେବାରେ ମନୋନିବେଶ କରି
ସଂସାର ପାରାବାରୁ ହୁଅନ୍ତି ପାରି
ବ୍ରହ୍ମ ଚିନ୍ତନ,
କର ସୁଜନ ।।

କୁଚ୍ଛ୍ରେଣା ମେଧ ମଧ୍ୟେ ନିୟମିତ ତନୁଭିଃ ସ୍ଥୀୟତେ ଗର୍ଭବାସେ
କାନ୍ତାବିଶ୍ଳେଷ ଦୁଃଖ ବ୍ୟତିକର ବିଷମୋ ଯୌବନେ ଚୋପଭୋଗଃ ।
କାମାକ୍ଷୀଣା ମବଜ୍ଞା ବିହସିତ ବସତି ର୍ବୃଦ୍ଧ ଭାବୋଽପ୍ୟ ସାଧୁଃ
ସଂସାରେ ରେ ମନୁଷ୍ୟା ବଦତ ଯଦି ସୁଖଂ ସ୍ୱଳ୍ପମପ୍ୟସ୍ତି କିଞ୍ଚିତ୍ । ୩୭ ।

ସଂସାର ଅଟଇ ମରୁ ମରୀଚିକା
ନାହିଁ ଏଥି ସୁଖ ଲେଶ,
ମାତୃଗର୍ଭେ ନର ସଙ୍କୁଚିତ ଦେହେ
ଘାଣ୍ଟଇ ମୂତ୍ର ପୁରୀଷ ।

ବିଷମ ଯୌବନେ କାନ୍ତା ସମାଗମେ
ବିରହ ବିଚ୍ଛେଦ ଦୁଃଖ,
ହୁଏ ମ୍ରିୟମାଣ ତା' ମନ ଶରୀର
ନ ମିଳଇ ଶାନ୍ତି ସୁଖ ।

ବାର୍ଦ୍ଧକ୍ୟ ଆସିଲେ ଶିଥିଳ ଶରୀର,
ଶୃଙ୍ଗାର ରହିତ ନର,
ସେ ସୁଖ ବଂଚିତ ଶାନ୍ତି ବିରହିତ
ମନ ତା' ସଦା ଅସ୍ଥିର ।
ଏ' ସଂସାରେ ନାହିଁ ସୁଖ,
ତଥାପି ମଣିଷ ଅବିବେକୀ ଅବିବେକ ।

ସଂସାର ପାଗଳ ମନ
କଦର୍ଥିତ ବିକଳନ ।

ବ୍ୟାଘ୍ରୀବ ତିଷ୍ଠତି ଜରା ପରିତର୍ଜୟନ୍ତୀ
ରୋଗାଶ୍ଚ ଶତ୍ରବ ଇବ ପ୍ରହରନ୍ତି ଦେହଂ ।
ଆୟୁଃ ପରିସ୍ରବତି ଭିନ୍ନ ଘଟାଦିବାମ୍ଭୋ
ଲୋକ ସ୍ତଥା ପ୍ୟହିତ ମାଚରତୀତି ଚିତ୍ରଂ । ୩୮ ।

ଧନ୍ୟ ଏ ନର
ଧନ୍ୟ ସଂସାର
ଧନ୍ୟ ଅଟେ ତା'ର ବୁଦ୍ଧି ବିଚାର ।
ଜାଣିଛି ଜରା
ତା' ଦେହ ଗୁମ୍ଫାରେ ବାଘୁଣୀ ପରା
କରେ ଗର୍ଜ୍ଜନ
ଗ୍ରାସିବାକୁ ତା'ର ଭରା ଯୌବନ ।

ବଇରୀ ପରି
ରୋଗ ବ୍ୟାଧି ଥାନ୍ତି ସଦା ପ୍ରହାରି
ଘଟରେ ଛିଦ୍ର,
ଝରି ଯାଏ ଜଳ ହୋଇ ଉନ୍ନିଦ୍ର ।
ମଣିଷ ଆୟୁଃ
ସେପରି ନିଃସରେ ତା' ପ୍ରାଣବାୟୁ ।
ତଥାପି ଦୁର୍ଭାଗା ମଣିଷ ଜାତି
ପର ପୀଡନରେ ଥାଆନ୍ତି ମାତି ।
ସେ ମୂଢ଼ଜନ
ବିବେକ ହୀନ ।

ଭୋଗା ଭଙ୍ଗୁର ବୃତ୍ତୟୋ ବହୁବିଧା ସ୍ତୈରେବ ଚାୟଂ ଭବ -
ସ୍ତତ୍କସ୍ୟେହ କୃତେ ପରିଭ୍ରମତରେ ଲୋକାଃ କୃତଂ ଚେଷ୍ଟିତୈଃ ।
ଆଶାପାଶ ଶତୋପଶାନ୍ତିବିଶଦଂ ଚେତଃ ସମାଧୀୟତାଂ
କାମୋତ୍ପତ୍ତିବ ଶାତ୍ ସ୍ୱଧାମନି ଯଦି ଶ୍ରଦ୍ଧେୟମସ୍ମଦ୍‌ବଚଃ । ୩୯ ।

ଏ ଭବ ଭୋଗଭୂମି କ୍ଷଣ ଭଙ୍ଗୁର
ତଥାପି ଭୋଗପାଇଁ ମନ ଆତୁର,
ସତେବା ଜନମିଛି ସେ ଭୋଗ ପାଇଁ
ଭୋଗର ପରିଣତି ସେ ବୁଝେ ନାହିଁ ।

ପାଗଳ ମନ ଭୋଗ ତୃଷ୍ଣା ପଛରେ
ବୃଥା ଭ୍ରମଇ ନର ଲାଭ ଆଶାରେ,
ନୁହଇ ଏହା ଜୀବ ବିହିତ କର୍ମ
ନୁହଇ ନୀତି ନିଷ୍ଠ ମାନବ ଧର୍ମ ।

ସପ୍ରେମେ ସେବାବ୍ରତ ଆଚରି ସଦା
ବିଭୁ ଚିନ୍ତନୁ ମନ ନ ଟାଣି କଦା,
ଶାନ୍ତ ମଧୁର ସ୍ୱଚ୍ଛ ଅନ୍ତଃକରଣେ
କର ନିମଗ୍ନ ଚିତ୍ତ ବିଭୁ ଚରଣେ ।
ସେ ତ୍ୟାଗ ତୀର୍ଥ
ପ୍ରଭୁ ପରମ ପଦ ।

ବ୍ରହ୍ମେନ୍ଦ୍ରାଦିମରୁଦ୍ଗଣାଂସ୍ତୃଣକଣାନ୍ ଯତ୍ର ସ୍ଥିତୋ ମନ୍ୟତେ
ଯତ୍ସ୍ୱାଦାଦ ବିରସା ଭବନ୍ତି ବିଭବାସ୍ତ୍ରୈଲୋକ୍ୟ ରାଜ୍ୟାଦୟଃ ।
ଭୋଗଃ କୋଽପି ସ ଏକ ଏବ ପରମୋ ନିତ୍ୟୋଦିତୋ ଜୃମ୍ଭତେ
ଭୋ ସାଧୋ କ୍ଷଣଭଙ୍ଗୁରେ ତଦିତରେ ଭୋଗେ ରତିଂ ମା କୃଥାଃ । ୪୦ ।

ଯହିଁ ମଣିଷ, ପ୍ରାଣୀ, କରନ୍ତି ବାସ
ସେଠାରେ ବ୍ରହ୍ମାଆଦି ଦେବେ ଦେବେଶ,
ମଣନ୍ତି ତୁଚ୍ଛ ସଦା ସେ ଜନସ୍ଥଳୀ
ନଅଟେ ତୁଲ୍ୟ ତାହା ସରଗପୁରୀ ।

ବ୍ରହ୍ମରସ ଅମୃତ ସଂସାରେ ସାର
ତା'ଠାରୁ ନାହିଁ କିଛି ମଧୁରତର,
କରିଛି ସ୍ୱାଦୁମୟ ତ୍ରିଲୋକ ସାରା
ସେ ସ୍ୱାଦୁ କର ପାନ ଅମୃତ ଝରା ।

ହୁଅନି ଲିପ୍ତ ଭବ ଭୋଗ ପ୍ରମୋଦେ
ଆସକ୍ତ ହୁଅ ସଦା ପରମ ପଦେ,
ସଂସାର ଭୋଗ ମାୟା ଅଟେ ଅନିତ୍ୟ
ଆଶ୍ରୟ ସେ ପଦ ଯା' ସତ୍ୟ ଓ ନିତ୍ୟ ।

ମନକୁ କଲେ ସଦା ହେ ! ବିଭୁମୁଖୀ
ଭବ ବନ୍ଧନ ଏଡ଼ି ହୋଇବ ସୁଖୀ ।

•

# କାଳ ମହିମା ବର୍ଣ୍ଣନା

ସା ରମ୍ୟା ନଗରୀ ମହାନ ସ ନୃପତିଃ ସାମନ୍ତଚକ୍ରଂଚ ତତ୍
ପାର୍ଶ୍ୱେ ତସ୍ୟ ଚ ସା ବିଦଗ୍ଧପରିଷଭ୍ରାଷ୍ଟନ୍ଦ୍ର ବିମ୍ବାନନାଃ ।
ଉଦ୍‌ବୃତଃ ସ ଚ ରାଜପୁତ୍ରନିବହସ୍ତେ ବନ୍ଦିନସ୍ତାଃ କଥାଃ
ସର୍ବଂ ଯସ୍ୟ ବଶାଦ୍‌ଗାତ୍ ସ୍ମୃତି ପଥଂ କାଳାୟ ତସ୍ମୈ ନମଃ । ୪୧ ।

କେ ଏଡ଼ି ପାରିବ ଏହି
କାଳର ମହିମା,
ବିଗତ ସ୍ମୃତିକୁ ଯାହା
କରେ ପରିକ୍ରମା ।
ମହାନ୍ ରାଜନ ତାଙ୍କ ସୁରମ୍ୟ ନଗରୀ
ତାଙ୍କ ରାଜ ପାରିଷଦ ସାମନ୍ତ ପ୍ରହରୀ,
ପାର୍ଶ୍ୱରେ ଲାବଣ୍ୟମୟୀ ଚନ୍ଦ୍ରାନନା ନାରୀ
ଉଦ୍ଧତ ରାଜକୁମାର ସଦା ସ୍ୱେଚ୍ଛାଚାରୀ
ଏ ସ୍ମୃତିକୁ ରଖେ ଉଜ୍ଜୀବିତ,
ବନ୍ଦନା କରନ୍ତି ନିତି ବନ୍ଦୀ ଶତ ଶତ ।

ସର୍ବ ସ୍ମୃତିର ଭଣ୍ଡାର
ଏହି ମହାକାଳ,
ଭରିପାରେ ହରିପାରେ
ସ୍ମୃତିର ସମ୍ବଳ ।
ଆହେ, କାଳ ! ତୁମ ପଦେ-
ଜଣାଏ ପ୍ରଣତି,
ତୁମେ ମହାଶକ୍ତିଧର
ତୁମେ ମହାଶକ୍ତି ।

ଯତ୍ରାନେକଃ କ୍ୱଚିଦପି ଗୃହେ ତତ୍ର ତିଷ୍ଠତ୍ୟଥୈକୋ
ଯତ୍ରାପ୍ୟେକସ୍ତଦନୁ ବହବସ୍ତତ୍ର ନୈକୋଽପି ଚାନ୍ତେ ।
ଇତ୍ଥଂ ନେୟୌ ରଜନିଦିବସୌ ଲୋଳୟନ୍ ଦ୍ୱାବିବାକ୍ଷୌ
କାଳଃ କଲ୍ୟୋ ଭୁବନ ଫଳକେ କ୍ରୀଡତି ପ୍ରାଣିଶାରୈଃ । ୪୨ ।

ଅଟଇ ଏ ସଂସାର ପଶାର କୋଠି
କାଳ ଚଳାଏ ତହିଁ 'ଜୀବନଗୋଟି',
ଥାଏ ଅନେକ ପୁଣି ରହେ ଗୋଟିଏ
ଥାଏ ଗୋଟିଏ ପୁଣି ଅନେକ ହୁଏ
ଶେଷରେ ଶୂନ୍ୟ,
ପ୍ରାଣୀ ଅଟଇ 'ଶାର' ପଶାର ପୁଣ ।

ଚାଲିଛି ଏହି ଖେଳ ଦିବସ ରାତି
କାଳ ଖେଳୁଛି ଏହା ଏ'ଭବେ ନିତି,
କିଏ ଜିତଇ ପୁଣି ହାରଇ କିଏ
ଏ ଖେଳ ହୁଏ ଶେଷ ଲୟେ ବିଲୟେ
ଅଲଂଘ୍ୟ କାଳ,
ଅଲଂଘ୍ୟ ଅଟେ ମଧ ଏ ପଶା ଖେଳ ।

ଅଟଇ ଏ ଜୀବନ ଜଞ୍ଜାଳମୟ
ପଶାଖେଳର ଏହା ଯେ ଅଭିନୟ
ହାରିବା ଜିତିବାଟା ଏହାର ପଣ,
ଖେଳହେ ଖେଳୁଆଡ଼, ଜିତ ଏ ରଣ ।

ଆଦିତ୍ୟସ୍ୟ ଗତାଗତୈ ରହରହଃ ସଂକ୍ଷୀୟତେ ଜୀବିତଂ
ବ୍ୟାପାରୈ ର୍ବହୁକାର୍ଯ୍ୟଭାରଗୁରୁଭିଃ କାଲୋଽପି ନ ଜ୍ଞାୟତେ ।
ଦୃଷ୍ଟ୍ୱା ଜନ୍ମ ଜରା ବିପତ୍ତି ମରଣଂ ତ୍ରାସଶ୍ଚ ନୋତ୍ପଦ୍ୟତେ
ପୀତ୍ୱା ମୋହମୟୀଂ ପ୍ରମାଦ ମଦିରା ମୁନ୍ମତ୍ତଭୂତ ଜଗତ । ୪୩ ।

ସୂର୍ଯ୍ୟଙ୍କ ଉଦୟ ଅସ୍ତେ ଜୀବନ ସଂଚରେ
ଜନ୍ମ ମରଣ ଜୀବର ଘଟେ ଏ ପ୍ରକାରେ ।
ଜୀବନ ଜଞ୍ଜାଳେ ନର ରହେ ଲିପ୍ତ ନିତି
ସଚେତନ ନୁହେଁ ମନ ଏ କାଳର ଗତି,
କାଳ, ସବୁ କରେ କ୍ଷୟ,
ତଥାପି ଏ ମଣିଷର ନାହିଁ ମନେ ଭୟ ।

ଭୋଗୁଛି ନିତି ସେ ଜନ୍ମ ଜରା ମୃତ୍ୟୁଭୟ
ତଥାପି ବଞ୍ଚିବା ପାଇଁ ସେ ସଦା ଅଥୟ,
ମୋହ ମୟ ମଦିରା ସେ କରିଥାଏ ପାନ
ପ୍ରମତ୍ତ ଅଟଇ ସଦା ମୋହାଚ୍ଛନ୍ନ ମନ
ଧନ୍ୟ, ଅଟେ ଏ ଜଗତ
କାଳ ବଶ ତଥାପି ଉନ୍ମଦ ।

ଏହା ଅଟେ ମାନବୀୟ ଧାରା
ବିଜଡିତ ବିଲୁଠିତ ନିଖିଳ ଏ ଧରା ।

ରାତ୍ରିଃ ସୈବ ପୁନଃ ସ ଏବ ଦିବସୋ ମତ୍ୱା ମୁଧା ଜନ୍ତବୋ
ଧାବନ୍ତ୍ୟୁଦ୍ୟମିନସ୍ତଥୈବ ନିଭୃତ ପ୍ରାରବ୍ଧ ତତ୍ତତ୍କ୍ରିୟାଃ,
ବ୍ୟାପାରୈଃ ପୁନରୁକ୍ତ ଭୂତବିଷୟେରିତ୍ଥଂ ବିଧେନାମୁନା
ସଂସାରେଣ କଦର୍ଥିତା ବୟୋମହୋ ମୋହାନ୍ନ ଲଜ୍ଜାମହେ । ୪୪ ।

ଦିନ ପରେ ରାତି, ରାତି ପରେ ଦିନ
ଏ'ତ ନିତ୍ୟ ସଂଘଟନ,
ଧନାଶାରେ ନର ସର୍ବଦା ଅସ୍ଥିର
କରେ ହୀନ କର୍ମ ମାନ ।

ଭ୍ରମ ଭଉଁରିରେ ସର୍ବଦା ଘୂରଇ
ମୋହାଚ୍ଛନ୍ନ ମନ ତା'ର
କେତେ ଭୋଗେ ସିଏ, ଦୁଃଖ ଓ ଯନ୍ତ୍ରଣା
ତଥାପି ସେ' ତୃଷ୍ଣାତୁର -
ବୃଥା ଧନ ଲାଭ ପାଇଁ,
ଏତେ ଭୋଗିମଧ୍ୟ ତଥାପି ପାଗଳ
ତା'ର ଟିକେ ଲଜ୍ଜା ନାହିଁ ।

ଏତେ କଦର୍ଥନା ଏତେ ସେ ଯନ୍ତ୍ରଣା
ଭୋଗିମଧ୍ୟ ନୁହେ ଶାନ୍ତ,
ତଥାପି ସେ ଅଟେ ପ୍ରୀତି ପ୍ରତିହାରୀ
ସର୍ବଦା ମନ ଅଶାନ୍ତ ।

ନ ଧ୍ୟାତଂ ପରମୀଶ୍ୱରସ୍ୟ ବିଧିବତ୍ସଂସାର ବିଚ୍ଛିତ୍ତୟେ
ସ୍ୱର୍ଗ ଦ୍ୱାର କବାଟ ପାଟନ ପଟୁ ର୍ଧର୍ମୋପି ନୋପାର୍ଜିତଃ ।
ନାରୀ ପୀନ ପୟୋଧରୋରୁ ଯୁଗଳଂ ସ୍ୱପ୍ନେଽପି ନାଲିଙ୍ଗିତଂ
ମାତୁଃ କେବଳ ମେବ ଯୌବନ ବନଚ୍ଛେଦେ କୁଠାରାବୟଂ । ୪୫ ।

ତାଙ୍କ ଶୋଭାବନ ଉଜାଡ଼ି ଜୀବନେ
ଦୁର୍ବହ କଷଣ ସହି,
ଜନନୀ ଆମକୁ ଜନ୍ମ ଦେଲେ ସିନା
ନପାରିଲୁ ମହି ମୋହି ।

ଭବ ବନ୍ଧନରୁ ମୁକ୍ତିଲାଭ ପାଇଁ
କରିନୁ ପ୍ରଭୁଙ୍କୁ ଧ୍ୟାନ,
ସ୍ୱର୍ଗ ଦ୍ୱାର ବିମୋଚନ କରିବାକୁ
କରିନାହୁଁ ଧର୍ମ କର୍ମ ।

ପ୍ରିୟାର ଉତ୍ତୁଙ୍ଗ ପୀନ ପୟୋଧର
କରିନୁ ପରଶ କେବେ
ମଉଳି ଗଲା ଏ ଜୀବନ ଯୌବନ
ବ୍ୟର୍ଥ, ବ୍ୟଥା ଅନୁଭବେ ।

ନୈରାଶ୍ୟରେ ଜର୍ଜ୍ଜରିତ
ଏ' ଜୀବନ, ମର୍ମାହତ ।

ନାଭ୍ୟସ୍ତା ପ୍ରତିବାଦିବୃନ୍ଦ ଦମନୀ ବିଦ୍ୟା ବିନୀତୋଚିତା
ଘଡ୍ଗାଗ୍ରୈଃ କରିକୁମ୍ଭ ପୀଠ ଦଳନୈର୍ନାକଂ ନ ନୀତଂ ଯଶଃ ।
କାନ୍ତାକୋମଳ ପଲ୍ଲବାଧର ରସଃ ପୀତୋ ନ ଚନ୍ଦ୍ରୋଦୟେ
ତାରୁଣ୍ୟଂ ଗତମେବ ନିଷ୍ଫଳ ମହୋ ଶୂନ୍ୟାଳୟେ ଦୀପବତ୍ । ୪୬ ।

ଲଭିନି ବିଦ୍ୟାଧନ ବିନୀତ ଚିତ୍ତ
ପ୍ରତିବାଦୀ ହୋଇବେ ବଶ ତୁରିତ,
କରୀ କୁମ୍ଭକୁ ଖଡ୍ଗେ ବିଦାରି ବାରେ
ଲଭିନି ଯଶ ଖ୍ୟାତି ଶକତି ବଳେ ।

ଜ୍ୟୋସ୍ନା ଚର୍ଚ୍ଚିତ ଚାରୁ ଚାନ୍ଦିନୀ ରାତି
ପାଖରେ ନାହିଁ ପ୍ରିୟା ଶୃଙ୍ଗାରବତୀ,
ପଲ୍ଲବାଧରାମୃତ କରବି ପାନ
ବିରହେ ବିତିଗଲା ସାରା ଜୀବନ ।

ନିଷ୍ଫଳେ ମଉଳିଲା ଜୀବନ ମୋର
ତାରୁଣ୍ୟ ଲିଭିଗଲା ହୋଇ ଆତୁର,
ଶୂନ୍ୟ ଆଳୟେ ଜଳେ ଜୀବନ ଦୀପ
ଶୂନ୍ୟତା ଭରି ଦିଏ ତା'ର ଆଲୋକ
ଅଟେ ଜୀବନ,
ବିଫଳତାର ଏକ ଶୂନ୍ୟ ଅୟନ ।

ବିଦ୍ୟା ନାଧିଗତା କଳଙ୍କ ରହିତା ବିତ୍ତଂ ଚ ନୋପାର୍ଜିତଂ
ଶୁଶ୍ରୂଷାପି ସମାହିତେନ ମନସା ପିତ୍ରୋର୍ନ ସମ୍ପାଦିତା ।
ଆଲୋଲାୟତ ଲୋଚନାଃ ପ୍ରିୟତମାଃ ସ୍ୱପ୍ନେଽପି ନାଲିଙ୍ଗିତାଃ
କାଲୋଽୟଂ ପରପିଣ୍ଡ ଲୋଲୁପତୟା କାକୈରିବ ପ୍ରେର୍ଯତେ ।୪୭ ।

ବିହିତ ବିଦ୍ୟାଭ୍ୟାସ
ଧନ ସମ୍ପଦ ଆଶ
　　　　କରିନି ଏ ଜୀବନ କାଳରେ,
ଭକତି ଭରା ମନେ
ମାତା ପିତା ପୂଜନେ
　　　　ପାଳିନି ସେବାବ୍ରତ ବିଧିରେ ।
ସ୍ୱପ୍ନରେ ଦେହମନ
କରିନି ଆଲିଙ୍ଗନ
　　　　ପଦ୍ମନୟନା ପ୍ରିୟତମାକୁ,
ମୋହରେ ହୋଇବଶ
ସଂଚାରୀ ପ୍ରୀତିରସ
　　　　ବରିନି ରସମୟୀ ବାମାକୁ ।
କି ହତଭାଗ୍ୟ ମୁହିଁ
ପରାନ୍ନେ ବଞ୍ଚିଥାଇ
　　　　ବାୟସ ସମ ଏହି ସଂସାରେ,
କାହାକୁ ଦୋଷିବି ଯେ
ଭାଗ୍ୟ ତ ବାମ ନିଜେ
　　　　ବିତେ ଜୀବନ ପରବାସରେ ।
　　　　ଭାଗ୍ୟତ ଅଟେ ମୋର ଦାରୁଣ
　　　　କିଏ ବା' ହରିବ ମୋ କଷଣ ।।

ବୟଂ ଯେଭ୍ୟୋ ଜାତାଶ୍ଚିର ପରିଚିତା ଏବ ଖଲ୍ୱତେ
ସମଂ ଯୈଃ ସଂବୃଦ୍ଧାଃ ସ୍ମୃତିବିଷୟତାଂ ତେଽପି ଗମିତାଃ ।
ଇଦାନୀମେତେ ସ୍ମଃ ପ୍ରତିଦିବସ ମାସନ୍ନ ପତନା
ଗତା ସ୍ତୁଲ୍ୟାବସ୍ଥାଂ ସିକତିଳନଦୀ ତୀରତରୁ ଭିଃ ।୪୮ ।

ଏ' କ୍ଷଣଭଙ୍ଗୁର ଭବେ ସବୁତ ଅସ୍ଥିର
ମର୍ତ୍ତ୍ୟ ଜଗତର ସର୍ବେ କେ' ନୁହନ୍ତି ଚିର,
ଜୀବନର ସର୍ବୋତ୍ତମ ପ୍ରିୟ ପିତା ମାତା
ସେମାନେ ଗଲେଣି ହୋଇ କାଳ ସ୍ରୋତ ଗତା ।

ଯିଏ ସବୁଥିଲେ, ଜରା ବାର୍ଦ୍ଧକ୍ୟ ପୀଡିତ
ସେମାନେ ସମସ୍ତେ ହୋଇ ସାରିଲେଣି ଗତ,
ଏହିପରି ପ୍ରତିଦିନ ଆସନ୍ନ ପତନ
ଏ ଜୀବନ ପଥ ସଦା ମୃତ୍ୟୁରେ ଆଛନ୍ନ ।

ସିକତିଳ ନଦୀ ଶଯ୍ୟା ତା' ତଟ ପାଦପ
ବିପଦ ସଙ୍କୁଳ ସଦା ମୃତ୍ୟୁ ଭୟ ଭାବ,
କେତେବେଳେ ମୃତ୍ୟୁ ମୁଖେ ହୋଇବ ପତନ
ତା'ପରି, କାଳାଅଧୀନ ମାନବ ଜୀବନ ।
କାଳବକ୍ଷେ ସର୍ବେ ମୃତ୍ୟୁବଶ
କାଳମୁଖୀ ଏ ଅନନ୍ତ ବିଶ୍ୱ ।

ଆୟୁର୍ବର୍ଷଶତଂ ନୃଣାଂ ପରିମିତଂ ରାତ୍ରୌ ତଦର୍ଦ୍ଧଂ ଗତଂ
ତସ୍ୟାର୍ଦ୍ଧସ୍ୟ ପରସ୍ୟ ଚାର୍ଦ୍ଧମପରଂ ବାଲତ୍ୱବୃଦ୍ଧତ୍ୱୟୋଃ ।
ଶେଷଂ ବ୍ୟାଧିବିୟୋଗ ଦୁଃଖସହିତଂ ସେବାଦି ଭିର୍ନୀୟତେ
ଜୀବେ ବାରି ତରଙ୍ଗ ଚଞ୍ଚଳତରେ ସୌଖ୍ୟଂ କୁତଃ ପ୍ରାଣିନାଂ । ୪୯ ।

ଶତାୟୁ ଯଦି ନର ଅଟେ ସଂସାରେ
ସେଥିରୁ ବିତେ ଅଧେ ଘନ ଅନ୍ଧାରେ,
ଦିବସ ହୁଏ ଶେଷ ଆସଇ ରାତି
ଶୟନେ ସ୍ୱପ୍ନେ ଯାଏ ଜୀବନ ବିତି ।

ବାକୀ ଯେ ରହେ ଅର୍ଦ୍ଧ ଶତବରଷ
ବାଲ୍ୟ, ବାର୍ଦ୍ଧକ୍ୟେ କାଟେ ତା'ର ଅର୍ଦ୍ଧାଂଶ,
ପଚିଶ ବରଷ ତ ଅଟଇ ଆୟୁ
ଶତବର୍ଷ ନାମରେ ଅଟେ ଦୀର୍ଘାୟୁ ।

ଶେଷ ବରଷତକ ବ୍ୟର୍ଥ ଜୀବନ
ଭୋଗେ ମଣିଷ ରୋଗ ବ୍ୟାଧି କଷଣ,
ଦୁଃଖ, ବିୟୋଗ, ସନ୍ତାପରେ ସମୟ -
କଟେ, ଚଳ ଚଞ୍ଚଳ ତରଙ୍ଗ ପ୍ରାୟ
କି ଅଛି ସୁଖ,
ମଣିଷ ଭୋଗେ ସଦା ଦୁଃଖାତିଦୁଃଖ ।

କ୍ଷଣଂ ବାଲୋଭୂତ୍ୱା କ୍ଷଣମପି ଯୁବା କାମରସିକଃ
କ୍ଷଣଂ ବିତ୍ତୈର୍ହୀନଃ କ୍ଷଣମପିଚ ସମ୍ପୂର୍ଣ୍ଣବିଭବଃ ।
ଜରାଜୀର୍ଣ୍ଣୈ ରଙ୍ଗୈର୍ନଟ ଇବ ବଳୀ ମଣ୍ଡିତ ତନୁ -
ର୍ନରାଃ ସଂସାରାନ୍ତେ ବିଶତି ଯମଧାନୀ ଯବନିକାଂ । ୫୦ ।

ଜୀବନର ରଙ୍ଗମଞ୍ଚେ
ଚାଲେ ଅଭିନୟ
ଏ' ମଣିଷ ବହୁରୂପେ
ହୁଏ ମଞ୍ଚମୟ ।
ଆଜି ଯେ ଅଟଇ ଶିଶୁ
କାଲି ସେ ଯୁବକ
ମଞ୍ଚବୁକେ ଉଭା ହୁଏ
କନ୍ଦର୍ପ ରସିକ ।
କାମ ରସ ବଶ
ବିଭବ ବିଳାସ ।

ଅବତୀର୍ଣ୍ଣ ହୁଏ ପୁଣି ଜରାଜୀର୍ଣ୍ଣ ବେଶେ,
ଶିଥିଳ ଅସ୍ଥିର ହୁଏ ବାର୍ଦ୍ଧକ୍ୟ ପରଶେ,
ଗ୍ରନ୍ଥିଳ ଶିରାଳ ହୁଏ, ତା' ତରୁଣ ତନୁ
ଲୁଳିତ ହୁଅଇ ଚର୍ମ, ବିମୁଖ ଅତନୁ ।
ମଞ୍ଚେ ଉଭା ଦୀନହୀନ ବେଶେ
ଦୃଶ୍ୟପଟୁ ଦୂର ହୁଏ ଅଭିନୟ ଶେଷେ ।
ପଡେ ଯବନିକା
ଟାଣି ଅସ୍ତରେଖା ।

•

କାଳ ମହିମା ବର୍ଣ୍ଣନା ସମାପ୍ତ

# ଯତି ନୃପତି ସମ୍ବାଦ

ତ୍ୱଂ ରାଜା ବୟମପ୍ୟୁପାସିତ ଗୁରୁ ପ୍ରଜ୍ଞାଭିମାନୋନ୍ନତାଃ
ଖ୍ୟାତସ୍ତ୍ୱଂ ବିଭବୈ ର୍ଯଶାଂସି କବୟୋଦିକ୍ଷୁ ପ୍ରତନ୍ୱନ୍ତି ନଃ ।
ଇତ୍ଥଂ ମାନ ଧନାତିଦୂର ମୁଭୟୋରପ୍ୟାବୟୋ ରନ୍ତରଂ
ଯଦ୍ୟସ୍ମାସୁ ପରାଙ୍ମୁଖୋଽସି ବୟମପ୍ୟେ କାନ୍ତତୋ ନିସ୍ପୃହାଃ ।୫୧ ।

କ୍ଷମତା ଶକ୍ତିଧର ଅଟନ୍ତି ରାଜା
କ୍ଷମତା ବଳେ ସିଏ ପାଳନ୍ତି ପ୍ରଜା,
ଯେ ଅଟେ ଜ୍ଞାନ ଦୀପ୍ତ ଆଚାର୍ଯ୍ୟ ଗୁରୁ
ଢ଼ାଳନ୍ତି ଭକ୍ତି ସଦା ହୃଦୟପୁରୁ ।

ପ୍ରଭୁତା ବିଭବରେ ଖ୍ୟାତ ରାଜନ
କୃତୀ କୀର୍ତ୍ତିରେ ଖ୍ୟାତ ପଣ୍ଡିତଗଣ,
ମାନ ସମ୍ମାନ ଖ୍ୟାତି ଉଭୟଙ୍କର
ସମାନ ନୁହେଁ କେବେ ପ୍ରଭେଦ ଘୋର ।

ରାଜା ଅବଜ୍ଞା ଯଦି କରନ୍ତି ଗୁରୁ
ସମ୍ମାନ ନ ଦିଅନ୍ତି ଅନ୍ତର ପୁରୁ,
ରାଜ ଶକ୍ତିକୁ ତାଙ୍କ ନ ଥାଏ ଭୟ
ଗୁରୁ ଆଚାର୍ଯ୍ୟ ଗଣ ସଦା ନିର୍ଭୟ ।

ଗୁରୁ ସମ୍ମାନ ରାଜା ହରାଇ ଥାନ୍ତି
ମିଳେନି ରାଜମନେ ବିମଳ ଶାନ୍ତି,
ଉଭୟେ କାହାଠାରୁ କେ ନୁହେଁ ଊଣା
ଆସ୍ଫାଳନ ଅଯଥା ଆତ୍ମ ପୀଡନା ।

ଅର୍ଥାନାମୀଶିଷେ ତ୍ୱଂ ବୟମପି ଚ ଗିରାମୀଶ୍ମହେ ଯାବଦର୍ଥଂ
ଶୂରସ୍ତ୍ୱଂ ବାଦିଦର୍ପ ପ୍ୟୁପଶମନବିଧା ବକ୍ଷୟଂ ପାଟବଂ ନଃ ।
ସେବନ୍ତେତ୍ୱା ଧନାଢ୍ୟା ମତିମଳ ହତୟେ ମାମପି ଶ୍ରୋତୃକାମା
ମୟ୍ୟପ୍ୟାସ୍ଥାନତେ ତେତ୍ୱୟି ମମ ନିତରାମେବ ରାଜନ୍ନନାସ୍ଥା । ୫୨ ।

ନୁହନ୍ତି ତୁଳନା ଯୋଗ୍ୟ
ଗୁରୁ ଓ ରାଜନ,
ଉଭୟେ ନୁହନ୍ତି ଯେଣୁ
ସମ ଭାବାପନ୍ନ ।
ଧନୀ ବ୍ୟକ୍ତିଙ୍କ ଗହଣେ
ପୂଜାପାନ୍ତି ରାଜା,
ମତିମାନ କରିଥାନ୍ତି
ସଦା ଗୁରୁ ପୂଜା ।
ସମାନ ନୁହନ୍ତି ବେନି, ତୁଳନା ରହିତ
ସମଗୁଣ ସମ୍ପନ୍ନରେ ହୁଅନ୍ତି ତୁଳିତ ।
ଅସମରେ କରିଲେ ତୁଳନା
ଏହା ଅଟେ ଅସମତା ସିନା ।

ସର୍ବ ପୂଜ୍ୟ ଅଟନ୍ତି ଆଚାର୍ଯ୍ୟ
କାଳେ ବକ୍ଷେ ଅଟନ୍ତି ସେ ପୂଜ୍ୟ ।

ବୟମିହ ପରିତୁଷ୍ଟା ବଲ୍‌କଲୈ ସ୍ତ୍ୱଂ ଦୁକୂଲୈଃ
ସମ ଇବ ପରିତୋଷୋ ନିର୍ବିଶେଷୋ ବିଶେଷଃ ।
ସ ତୁ ଭବତୁ ଦରିଦ୍ରୋ ଯସ୍ୟ ତୃଷ୍ଣା ବିଶାଳା
ମନସି ଚ ପରିତୁଷ୍ଟେ କୋଽର୍ଥବାନ୍ କୋ ଦରିଦ୍ରଃ । ୫୩ ।

ଜ୍ଞାନୀ ମୁନି ଗଣ ସଦା,
ପରିତୁଷ୍ଟ ବଲ୍‌କଳ ବାସରେ,
ରାଜନ ଧନିକ ଗଣ
ସଦା ତୃପ୍ତ ଦିବ୍ୟ ଭୂଷଣରେ ।
ଅମାପ ଯାହାର ତୃଷ୍ଣା ସେ ଦରିଦ୍ର ସିନା
ଧନହୀନ ନୁହେଁ ସଦା ଦରିଦ୍ରରେ ଗଣା ।
ଆତ୍ମା ଯଦି ପରିତୁଷ୍ଟ କି ଧନୀ ଗରିବ
ସନ୍ତୋଷେ ନଥାଏ କେବେ ଭେଦ ଅନୁଭବ ।

ଫଳମୂଳମଶନାୟ ସ୍ୱାଦୁ ପାନାୟ ତୋୟଂ
କ୍ଷିତିରପି ଶୟନାର୍ଥଂ ବାସସେ ବଲ୍‌କଳଂ ଚ ।
ନବଧନ ମଧୁପାନ ଭ୍ରାନ୍ତ ସର୍ବେନ୍ଦ୍ରିୟାଣା -
ମବିନୟ ମନୁମନ୍ତୁଂ ନୋତ୍ସହେ ଦୁର୍ଜନାନାଂ ।୫୪ ।

କି ଦୁଃଖ ଫଳ ଭୋଗ କରୁଛି ମୁହିଁ
ସଂସାରୀ ହୋଇ ମଧ ସଂସାର ନାହିଁ,
ଭ୍ରମୁଛି ଦ୍ୱାରେ ଦ୍ୱାରେ ଭିକାରି ବେଶେ
କରୁଛି ଫଳମୂଳ ଭକ୍ଷଣ ତୋଷେ ।

ଭୂମିରେ କରୁଅଛି ମୁହିଁ ଶୟନ
ବଲ୍‌କଲ ବାସ ମୋର ଅଟେ ବସନ,
ଅଟଇ ଏହା ମୋର ଭାଗ୍ୟର ଫଳ
ବ୍ୟାକୁଳ ହେଲେ ମଧ ଭୋଗିବା ସାର ।

ବିପଥଗାମୀ ମୋର ନହେଉ ମନ
ନକରେ ଏ ଜୀବନେ ମୁଁ ସୁରା ପାନ,
ନହେଉ ଇନ୍ଦ୍ରିୟ ମୋ ଭ୍ରାନ୍ତ ବିବଶ
ନକରେ ସ୍ୱୀକାର ମୁଁ ଖଳପ୍ରୟାସ ।

**ଅଶୀମହି ବୟଂ ଭିକ୍ଷାମାଶାବାସୋ ବସୀମହି**
**ଶୟୀମହି ମହୀପୃଷ୍ଠେ କୁର୍ବୀମହି କିମୀଶ୍ୱରୈଃ ।୫୫ ।**

ଭିକ୍ଷାନ୍ନ ମୁଁ କରୁଛି ଭକ୍ଷଣ
ଭୂମି ଶେଯେ କରୁଛି ଶୟନ
ଦିଗାମ୍ବର ବେଶେ,
କରୁଛି ଭ୍ରମଣ ମୁହିଁ ଆଜି ଭାଗ୍ୟବଶେ ।
ନାହିଁ ମୋର ରାଜ ପଦ ଭିକ୍ଷା
ନେଇଅଛି ଜୀବନେ ମୁଁ....
ଭବ ଦୁଃଖ ଦୀକ୍ଷା ।

ପୂରିଲାନି ଜୀବନେ ଏଷଣା
ଏ'ତ ବିଡ଼ମ୍ବନା ।

ନ ନଟା ନ ବିଟା ନ ଗାୟକା ନ ଚ ସଭ୍ୟେତର ବାଦ ଚଞ୍ଚବଃ ।
ନୃପ ବୀକ୍ଷିତୁମତ୍ର କେ ବୟଂ ସ୍ତନଭାରା ନମିତା ନ ଯୋଷିତଃ । ୫୬ ।

ହେ ରାଜନ୍ !
ତୁମ୍ଭ ଦର୍ଶନାର୍ଥେ ମୁହିଁ ନଅଟେ ଭାଜନ ।
ନୁହେଁ ମୁହିଁ ନଟ ନଟୀ
ନଅଟେ ଗାୟକ,
ନୁହଇ ଜାର ପୁରୁଷ
ନୁହେଁ ବିଦୂଷକ ।
ନୁହେଁ ଘନ ପୀନସ୍ତନା
ମୁଗ୍ଧା ସୀମନ୍ତିନୀ,
ରାଜମନ ତୋଷିବାକୁ
ନୁହେଁ ଶୃଙ୍ଗାରିଣୀ ।
ଶୂନ୍ୟତାର ଅଟେ ମୁଁ ପ୍ରତୀକ
ଶୂନ୍ୟ ମୁହିଁ ନାହିଁ ମୋର ଭେକ ।

ବିପୁଳ ହୃଦୟୈରୀଶୈରେତଜଗଜନିତ ପୁରା
ବିଧୃତ ମପରୈର୍ଦତ୍ତଂ ଚାନ୍ୟୈର୍ବିଜିତ୍ୟ ତୃଣଂ ଯଥା ।
ଇହ ହି ଭୁବନାନ୍ୟନ୍ୟେ ଧୀରାଷ୍ଟତୁର୍ଦଶ ଭୁଞ୍ଜତେ
କତିପୟପୁରସ୍ୱାମ୍ୟେ ପୁଂସା କଏଷ ମଦଜରଃ ।୫୭ ।

ଦୀର୍ଘ ଅତୀତ
ସେ କାଳାତୀତ ।
ହୋଇଲା ସୃଷ୍ଟି ଯେବେ ବିରାଟ ବିଶ୍ୱ
ତାହାକୁ ପାଳୁଥିଲେ ଦେବନରେଶ,
ମହା ଆନନ୍ଦେ ପ୍ରଜା ସେ ପାଳୁଥିଲେ
ବିଶ୍ୱମଙ୍ଗଳ ପାଇଁ ସେ ଚିନ୍ତାକଲେ ।

ବିଶ୍ୱକୁ ବାଣ୍ଟି ଦେଲେ ସେ ଜଣେ ଜଣେ
ଶାସନ କରିବେ ସେ ନୀତି ନିପୁଣେ,
ବିଶାଳ ଉଦାର ସେ ରାଜନ ଗଣ
କ୍ଷମତା ରାଜପଣ, ମଣନ୍ତି ତୃଣ ।

ସେମାନେ ଗଲେ କାହିଁ ଆଜି ଏ ବିଶ୍ୱ
ଶାସକ ବୁଦ୍ଧିମାନ କରିଛି ନିସ୍ୱଃ,
ନାହିଁ ସେ ଉଦାରତା ସେ କ୍ଷମାପଣ
ଭୋଗ ପ୍ରମତ୍ତ ଆଜି ଶାସକ ଗଣ ।

ସାମାନ୍ୟ ପଣ ଅଛି ଆଜି ଯା'ହାତେ
ସ୍ୱାର୍ଥେ ବୁଡ଼ିଛି ସିଏ ଭୋଗ ପ୍ରମତ୍ତେ ।

ଅଭୁକ୍ତାୟାଂ ଯସ୍ୟାଂ କ୍ଷଣମପି ନ ଜାତଂ ନୃପଶତୈ -
ର୍ଭୁବସ୍ତସ୍ୟା ଲାଭେ କଇବ ବହୁମାନଃ କ୍ଷିତିଭୃତାଂ ।
ତଦଂ ଶସ୍ୟାପ୍ୟଂଶେ ତଦବୟବ ଲେଶେଽପି ପତୟୋ
ବିଷାଦେ କର୍ତ୍ତବ୍ୟେ ବିଦଧତି ଜଡ଼ାଃ ପ୍ରତ୍ୟୁତ ମୁଦଂ ।୫୮ ।

ବହୁ ନୃପ ଆସିଥାନ୍ତି ଭବେ
ହୁଅନ୍ତି ସେ ଭୋଗମତ୍ତ -
ବିପୁଳ ବିଭବେ ।
କ୍ଷଣକାଳ ପରେ
ନିଅନ୍ତି ବିଦାୟ ସର୍ବେ
କାଳର ସେ କରାଳ ସ୍ରୋତରେ ।
ସମୃଦ୍ଧ ନୃପଙ୍କ ଠାରୁ -
ନ୍ୟୁନ ନୃପଗଣ,
ମନ ତାଙ୍କ ଉଦାସୀନ
ନଥାଏ ପ୍ରସନ୍ନ -
ଧନେ ଊଣା ବୋଲି,
ଜଡ଼ ମୂର୍ଖ ହସୁଥାଏ ଆନନ୍ଦରେ,
ହାତ ତା'ର ଖାଲି ।

ମୃତ୍ପିଣ୍ଡୋ ଜଲରେଖୟା ବଲୟିତଃ ସର୍ବୋଽପ୍ୟୟଂ ନନ୍ୱଣୁଃ
ସ୍ୱାଂଶୀକୃତ୍ୟ ତମେବ ସଂଗରଶତୈରାଜ୍ଞାଂ ଗଣା ଭୁଞ୍ଜତେ ।
ତେ ଦଦ୍ୟୁର୍ଦଦତୋଽଥବା କିମପରଂ କ୍ଷୁଦ୍ରା ଦରିଦ୍ରା ଭୃଶଂ
ଧିଗ୍ଧିକ୍ତାନ୍ ପୁରୁଷାଧମାନ୍ ଧନକଣାନ୍ ବାଞ୍ଛନ୍ତି ତେଭ୍ୟୋଽପି ଯେ । ୫୯ ।

ଧନ୍ୟରେ ମାନବ ଧନ୍ୟ
ତୋର ଧନ କ୍ଷୁଧା
ଜଳରେ ବେଷ୍ଟିତ ଅଟେ
ବିରାଟ ବସୁଧା ।
ତାକୁ ତୁହି ଯୁଦ୍ଧ ବିଗ୍ରହରେ
ଖଣ୍ଡ ଖଣ୍ଡ କରି ଭୋଗୁ, ଅଖଣ୍ଡ ମହିରେ ।

ରଣରଙ୍କ ନୃପଗଣ
ହୋଇ ମୋହାସକ୍ତ,
ଧ୍ୱଂସ ସାଧନରେ ସଦା
ରହିଥାନ୍ତି ଲିପ୍ତ -
କରନ୍ତିନି ଦୀନଦୁଃଖୀ ସେବା,
କାହାକୁ ଦିଅନ୍ତି ନାହିଁ ଅନ୍ନ ମୁଠେ ଅବା ।
ସେ'କି ମଣିଷରେ ଗଣା
ଅଭାଗା ଜନରେ ଯା'ର ନଥାଏ କରୁଣା !

ସ୍ୱାଭିମାନ, ଭୁଲିଯାଏ
ସେପରି ରାଜାଙ୍କୁ
ଯେ ଧନ ଭିକ୍ଷା କରନ୍ତି
ଶତଧିକ୍ ତାଙ୍କୁ ।
ତାଙ୍କ ଠାରେ ଅଛି କି ହୃଦୟ !
ଦେଇକି ପାରିବେ ସିଏ
ଅପରେ ଅଭୟ ! !

ସ ଜାତଃ କୋଽପ୍ୟାସୀନ୍ମଦନରିପୁଣା ମୂର୍ଦ୍ଧ୍ନି ଧବଳଂ
କପାଳଂ ଯସ୍ୟୋଚ୍ଚୈର୍ବିନିହିତ ମଳଙ୍କାରବିଧୟେ ।
ନୃଭିଃ ପ୍ରାଣ ତ୍ରାଣ ପ୍ରବଣ ମତିଭିଃ କୈଶ୍ଚିଦଧୁନା
ନମଦ୍ଭିଃ କଃ ପୁଂସାମୟ ମତୁଳ ଦର୍ପଜ୍ୱର ଭରଃ । ୬୦ ।

ଅଟନ୍ତି ମନ୍ମଥ ରିପୁ ସ୍ୱୟମ୍ଭୁ ଶଙ୍କର
ଜଟାଜୁଟ ଅଟେ ତାଙ୍କ ମସ୍ତକ ଧବଳ,
କରିଛନ୍ତି କନ୍ଦର୍ପର ଦର୍ପ ସେ ଦଳନ
ସମ୍ମୋହନ କାମ ରୂପ, କରି ରୂପହୀନ ।

କନ୍ଦର୍ପକୁ ଭସ୍ମକରି କଲେ ଅଶରୀରୀ
ପ୍ରାଣ ତ୍ରାଣ ପାଇଁ 'ମାର' କରିଲେ ଗୁହାରି
ହେଲେ ସେ ବିଫଳ,
ଲଭିଲେ ସେ କର୍ମାର୍ଜିତ ଫଳ ।

କନ୍ଦର୍ପ ପରି ଅଚିରେ ଧ୍ୱଂସ ସେ ଲଭନ୍ତି
ସିଦ୍ଧ ସନ୍ଥ ଜନେ ଯେହୁ ଦର୍ପ ପ୍ରକାଶନ୍ତି ।

ମଣ୍ଡିଲେ ନିଜକୁ 'ନୀଚେ', ମହାର୍ଘ ଭୂଷଣେ
ହେବେକି ସେ 'ଉଚ୍ଚ' କେବେ ବିଶ୍ୱ ଜନମନେ ।।

•

ଯତି ନୃପତି ସମ୍ବାଦ ବର୍ଣ୍ଣନ ସମାପ୍ତ

# ମନଃ ସମ୍ବୋଧନ

ପରେଷାଂ ଚେତାଂସି ପ୍ରତିଦିବସ ମାରାଧ୍ୟ ବହୁଧା
ପ୍ରସାଦଂ କିଂ ନେତୁଂ ବିଶତି ହୃଦୟ କ୍ଳେଶ କଳିତଂ ।
ପ୍ରସନ୍ନେ ତ୍ୱଯ୍ୟନ୍ତଃ ସ୍ୱୟମୁଦିତ ଚିନ୍ତାମଣି ଗଣୋ
ବିବିକ୍ତଃ ସଂକଳ୍ପଃ କିମଭିଲଷିତଂ ପୁଷ୍ୟତି ନ ତେ । ୬୧ ।

ରେ ମନ କିମ୍ପା ତୁହି ସଦା ତୃଷିତ
ପର ଚିତ୍ତ ତୋଷଣେ ଦିବସ ରାତ୍ର,
ଭୋଗୁଛୁ ନାନା ଦୁଃଖ କ୍ଳେଶ ଅପାର
କାହିଁକି ମନ ତୋର ସଦା ଆତୁର !

ପ୍ରସନ୍ନ ରଖିଲେ ତୁ ମନକୁ ସଦା
ହୋଇବ ନିଶ୍ଚେ ତାହା ଅଭୟ ପ୍ରଦା,
ସତ୍‌କର୍ମେ ବିନିଯୁକ୍ତ ରହିଲେ ମନ
ସର୍ବଦା ରହିବ ଏ ଚିତ୍ତ ପ୍ରସନ୍ନ ।

କର ତୁ ଧ୍ୟାନ ଚିତ୍ତେ ଚିନ୍ତାମଣିଙ୍କୁ
କରିବେ ଦୂର ପ୍ରଭୁ ତୋ ଦୁରିତକୁ,
ସେ ସବୁ ମନୋବାଞ୍ଛା କରନ୍ତି ପୂର୍ଣ୍ଣ
ଅନ୍ୟ ମନ ତୋଷଣ କି ପ୍ରୟୋଜନ ।।

ପରିଭ୍ରମସି କିଂମୁଧା କ୍ୱଚନ ଚିତ୍ତ ବିଶ୍ରାମ୍ୟତାଂ
ସ୍ୱୟଂ ଭବତି ଯଦ୍ ଯଥା ଭବତି ତତ୍ତଥା ନାନ୍ୟଥା ।
ଅତୀତ ମନନୁ ସ୍ମରନ୍ନପି ଚ ଭାବ୍ୟସଂକଳ୍ପୟ -
ନ୍ନତର୍କିତ ସଂମାଗମା ନନୁଭବାମି ଭୋଗାନହଂ । ୬୨ ।

ଭ୍ରମୁଛୁ ଭ୍ରମେ କିମ୍ପା ରେ ମନ ତୁହି
କୌଣସିଠାରେ ତୋର ସ୍ଥିରତା ନାହିଁ,
ଯାହା ଘଟିବା ଥିବ ଘଟିବ ତାହା
ଅନ୍ୟଥା କେ' କରିବ ନିର୍ଦ୍ଦିଷ୍ଟ ଯାହା
ଅତୀତ ପାଇଁ,
ବିଚଳିତ ହେବାର କାରଣ ନାହିଁ ।

ରେ ମନ ! ଧେୟକର ଭବ୍ୟ ଭାବକୁ
ସଂଯତ କର ତୋର ବିଚଳନକୁ,
ଘଟିବ ଯାହା ଅତର୍କିତ ଘଟଣା
କେ କରି ପାରିବ କି ତାହାକୁ ମନା !
ହୁଅ, ତୁ ମନ ସ୍ଥିର
ନିଜକୁ କର ନାହିଁ କେବେ ଅସ୍ଥିର ।

ସର୍ବ ଶକ୍ତି ଆଧାର ବିଧି ବିଧାନ
କେ କରି ପାରିବ ତା' ସଂସାରେ ଆନ !!

ଏତସ୍ମାଦ୍ ବିରମେନ୍ଦ୍ରିୟାର୍ଥ ଗହନାଦାୟା ସକାଦାଶ୍ରୟ
ଶ୍ରେୟୋମାର୍ଗ ମଶେଷ ଦୁଃଖ ଶମନ ବ୍ୟାପାର ଦକ୍ଷଂ କ୍ଷଣାତ୍
ସ୍ୱାତ୍ମୀଭାବ ମୁପୈହି ସଂତ୍ୟଜ ନିଜାଂ କଲ୍ଲୋଳଲୋଳାଂ ଗତିଂ
ମା ଭୂୟୋ ଭଜ ଭଙ୍ଗୁରାଂ ଭବରତିଂ ଚେତଃ ପ୍ରସୀଦାଧୁନା ।୬୩ ।

ରେ ମନ ! ପୋଷଣ ତୁ କର ଉଚ୍ଚାଶା
ପରିହର ତୁ ଇନ୍ଦ୍ରିୟର ଲାଳସା,
ଶ୍ରେୟ ମାର୍ଗକୁ କର ଅନୁସରଣ
ଲଭିବୁ ଶାନ୍ତି ସୁଖ, ଅଭୟ ପୁଣ ।

ଦୂର ହୋଇବ ତୋର ଦାରୁଣ ଦୁଃଖ
ଭରିବ ପ୍ରାଣେ ଆତ୍ମସନ୍ତୋଷ ସୁଖ,
କଲ୍ଲୋଳ ସମ ତୋର ଚଞ୍ଚଳ ଗତି
କରଇ ତାହା ତୋତେ ଅସ୍ଥିର ଅତି ।

ଏହାକୁ ପରିହରି ହୁଅରେ ସ୍ଥିର
ଜାଣିଛୁ ନିକି ଏହି ଭବ ଭଙ୍ଗୁର,
ତେଜ ଅନିତ୍ୟ ଭବ ମୋହ ଆସକ୍ତି
ଶ୍ରେୟ ପଥରେ ସଦା ଚଳାଅ ମତି ।

ଦୂରେଇ ଗ୍ଲାନି, ଚିତ୍ତ ରଖ ପ୍ରସନ୍ନ -
ଲଭିବୁ ସ୍ଥିରଭାବ ପ୍ରଶାନ୍ତ ମନ ।

ମୋହଂ ମାର୍ଜୟ ତାମୁପାର୍ଜୟ ରତିଂ ଚନ୍ଦ୍ରାର୍ଦ୍ଧଚୂଡାମଣୌ
ଚେତଃ ସ୍ୱର୍ଗତରଙ୍ଗିଣୀ ତଟଭୂବାମାସଙ୍ଗ ମଙ୍ଗୀକୁରୁ ।
କୋବା ବୀଚିଷୁ ବୁଦ୍‌ବୁଦେଷୁ ଚ ତଡ଼ିଲ୍ଲେଖାସୁ ଚ ଶ୍ରୀଷୁତ
ଜ୍ୱାଳାଗ୍ରେସୁ ଚ ପନ୍ନଗେଷୁ ଚ ସୁହୃଦ୍‌ବର୍ଗେଷୁ ଚ ପ୍ରତ୍ୟୟଃ ।୬୪ ।

ମୋ କଥା ଘେନ ଆରେ
ମୋ କଥା ଘେନ,
ବୁଝାଇ କହୁଛି ମୁଁ,
ବାଇଆ ମନ...ଆରେ ବାଇଆ ମନ ।
ମୋହ ମାର୍ଜନା କର ମନରୁ ତୋର,
କର ତୁ ପୂଜା, ପ୍ରଭୁ ଶିବ ଶଙ୍କର,
ବାସକର ତୁ ଯାଇ ଜାହ୍ନବୀ ତୀରେ
ଅବଗାହନ କର ପବିତ୍ର ନୀରେ ।

ବିଶ୍ୱାସ କରନାହିଁ, ତରଙ୍ଗ ମାଳା
ଜଳ ବୁଦ୍ ବୁଦ୍ ଆଉ ବିଦ୍ୟୁତ ଧାରା,
ଯେ ବନ୍ଧୁ ସର୍ପ ତୁଲ୍ୟ ଦଂଶନଶୀଳ
ସର୍ବଦା ରହ ତୁହି ତା'ଠାରୁ ଦୂର
ମୋ କଥା ଘେନ
ବାଚାଳ ମନ ଆରେ, ବାଚାଳ ମନ ।

ଚେତ ଶ୍ଚିନ୍ତୟ ମା ରମାଂ ସକୃଦିମା ମସ୍ଥାୟିନୀମାସ୍ଥୟା
ଭୂପାଳ ଭ୍ରୂକୁଟୀ କୁଟୀ ବିହରଣ ବ୍ୟାପାର ପଣ୍ୟାଙ୍ଗନାଂ ।
କନ୍ଥା କଞ୍ଚୁକିନଃ ପ୍ରବିଶ୍ୟ ଭବନଦ୍ୱାରାଣି ବାରାଣସୀ -
ରଥ୍ୟା ପଂକ୍ତିଷୁ ପାଣିପାତ୍ର ପତିତାଂ ଭିକ୍ଷାମପେକ୍ଷା ମହେ ।୬୫ ।

ରାଜମନ ଯିଏ ଟାଳି ଦେଇପାରେ
ତାରୁଣ୍ୟ କଟାକ୍ଷ ଟାଣି,
ସେ'ତ ଶୃଙ୍ଗାରିଣୀ ବିଟପୀ ନାୟିକା
ସଦା ଚିତ୍ତ ବିନୋଦିନୀ ।
ରେ ମନ ! ତା' ରୂପ କର ପରିହାର
ତୋ ଚିତ୍ତ ଚିନ୍ତନ ପଟ୍ଟୁ,
ଧନ ଲାଭ ପାଇଁ ନରଖ ଲାଳସା
'ତ୍ୟାଗଭାବ' ହୃଦ ରଟ୍ଟୁ ।

ବରଂ ଶ୍ରେୟ ଅଟେ କାଶୀ ପୁଣ୍ୟ ଧାମେ
ଦ୍ୱାର ଦ୍ୱାର ବୁଲି ବୁଲି,
ଭିକ୍ଷା ଆଚରଣେ ସନ୍ତୋଷ ଲଭିବା
ଭାବ ଶ୍ରେଷ୍ଠ ବୃତ୍ତି ବୋଲି ।

ଚପଳ ଚିତ୍ତକୁ ଚଞ୍ଚଳ ନକର ତୋର
ସଂଯମତା ରକ୍ଷା, ଏ ଜୀବନେ ଶ୍ରେୟସ୍କର ।

ଅଗ୍ରେ ଗୀତଂ ସରସ କବୟଃ ପାର୍ଶ୍ୱୟୋର୍ଦାକ୍ଷିଣାତ୍ୟାଃ
ପଶ୍ଚାଲ୍ଲୀଳା ବଳୟ ରଣିତଂ ଚାମର ଗ୍ରାହିଣୀନାଂ ।
ଯଦ୍ୟସ୍ତ୍ୱେବ କୁରୁ ଭବରସାସ୍ୱାଦନେ ଲମ୍ପଟତ୍ୱଂ
ନୋ ଚେଚ୍ଚେତଃ ପ୍ରବିଶ ସହସା ନିର୍ବିକଳ୍ପେ ସମାଧୌ । ୬୬ ।

ସଙ୍ଗୀତ ପରା
ତା' ରସ ଝରା,
ଯଦି ଇଚ୍ଛା ଅଛି କର ତୁ ପାନ
ଜୟ କରିବ ତୋ' ହୃଦୟ ମନ ।

ପାଖରେ ରହିଛି ରସ ସାହିତ୍ୟ
ଦକ୍ଷିଣୀ କବିର ସେ କାବ୍ୟାମୃତ,
କର ରସ ପାନ ଅମୃତ ସେବି
ସାତ୍ତ୍ୱିକ ଶୃଙ୍ଗାର ତୁ' ଅନୁଭବି ।

ବେନି ପାର୍ଶ୍ୱେଛନ୍ତି ସେ ଚାମରିଣୀ
ଶୁଭେ ଚଳ କଟି କର କିଙ୍କିଣି,
ବହୁଛି ସେ ତାନେ ରସର ଝର
ମନ ଭରି ତାହା ପାନ ତୁ କର
ନହେଲେ ନାହିଁ,
ଅମୃତ ରସକୁ ପାନ କରିବାକୁ
ସମାଧି ଯୋଗରେ ବସ ତୁ ଯାଇ ।

ମିଳିବ ତହିଁରୁ ପରମ ଶାନ୍ତି
ତୁଟିଯିବ ମନୁ ସକଳ ଭ୍ରାନ୍ତି ।

ପ୍ରାପ୍ତାଃ ଶ୍ରିୟଃ ସକଳ କାମଦୁଘାସ୍ତତଃ କିଂ
ନ୍ୟସ୍ତଂ ପଦଂ ଶରସି ବିଦ୍‌ବିଷତାଂ ତତଃ କିଂ ।
ସମ୍ପାଦିତାଃ ପ୍ରଣୟିନୋ ବିଭବୈସ୍ତତଃ କିଂ
କଳ୍ପସ୍ଥିତା ସ୍ତନୁଭୃତାଂ ତନବସ୍ତତଃ କିଂ । ୬୭ ।

କି ଲାଭ କହ ମନ ! କି ଲାଭ କହ
ବାଞ୍ଛିତ ସମ୍ପଦରେ ରହିଲେ ମୋହ,
ଲଭିଲେ ତାହା ଅବା ଜୀବନେ ତୁହି
ସେଥିରେ ଜନମ କି ସାର୍ଥକ ହୋଇ !

ଗଣ ମସ୍ତକେ ପଦ ରଖିଯେ ମଦେ
ଭାବେ ନିଜକୁ ବଡ଼, ଧିକ୍ ସେ ପଦେ,
ଧନବଳେ ମିତ୍ରତା ଲଭି କି ଫଳ
କି ଲାଭ ହେବ ବଞ୍ଚି ସୁଦୀର୍ଘ କାଳ !!
କହ ଅଛି ତହିଁରେ କି ସାର୍ଥକତା
ଜୀବନେ ନାହିଁ ଯଦି ତ୍ୟାଗର ବାର୍ତ୍ତା ।

ଭକ୍ତିର୍ଭବେ ମରଣ ଜନ୍ମଭୟଂ ହୃଦିସ୍ଥଂ
ସ୍ନେହୋ ନ ବନ୍ଧୁଷୁ ନ ମନ୍ମଥଜା ବିକାରାଃ ।
ସଂସର୍ଗ ଦୋଷ ରହିତା ବିଜନା ବନାନ୍ତା
ବୈରାଗ୍ୟମସ୍ତି କି ମିତଃ ପରମର୍ଥନୀୟଂ । ୬୮ ।

ଭୟ ଭୂମି ଅଟେ ଏ ସଂସାର,
ସବବେ ଅସ୍ଥିର ଏଥି
ଜନ୍ମ ମୃତ୍ୟୁ ପାଇଁ ଭୟାତୁର ।
ସଂସାରର ମୋହ ମାୟା ଘନ ଆବର୍ତ୍ତରେ
ସମସ୍ତେ ଘୂରନ୍ତି ଏଥି ମୋହ ଅନ୍ଧକାରେ,

ମନେ ଭରି ମନ୍ମଥ ବିକାର
ତୁଚ୍ଛ ଏ'ତ ତୁଚ୍ଛ ଏ ସଂସାର ।
ସବୁଠାରୁ ଶ୍ରେୟ ଅଟେ-
ଏ ବିଜନ ବନ,
ସଂସର୍ଗ ଦୋଷ ରହିତ
ଆନନ୍ଦ ଭୁବନ ।
ଏଥି ଅଛି ବୈରାଗ୍ୟର
ବିପୁଳ ସମ୍ଭାର,
ପ୍ରେମମୟ ପରମାର୍ଥ
ଦିବ୍ୟ ଚିନ୍ତନର ।
ଏହାଠାରୁ ଶ୍ରେୟ ଅଛି କିସ
ଭରିଦିଏ ଶାନ୍ତିର ପୀୟୂଷ ।

ତସ୍ମାଦନନ୍ତମଜରଂ ପରମଂ ବିକାସି
ତଦ୍ ବ୍ରହ୍ମ ଚିନ୍ତୟ କିମେଭିରସଦ୍‌ବିକଳ୍ପୈଃ ।
ଯସ୍ୟାନୁଷଙ୍ଗିଣ ଇମେ ଭୁବନାଧିପତ୍ୟ -
ଭୋଗାଦୟଃ କୃପଣ ଲୋକମତା ଭବନ୍ତି । ୬୯ ।

ପରଂବ୍ରହ୍ମ ପ୍ରଭୁ ପରାତ୍ପର
ଜନ୍ମ ଜରା ରହିତ ଈଶ୍ୱର
ସେ ପ୍ରକାଶ ମାନ,
ସାରା ବିଶ୍ୱେ, କୋଣ ଅନୁକୋଣେ ।

ସର୍ଜନାର ଅନନ୍ତ ବଳୟ
ସବୁଠାରେ ସେ'ତ ରୂପମୟ
ନାହିଁ ପରିସର,
ପରଂବ୍ରହ୍ମ ପରମ ଈଶ୍ୱର ।

ଧ୍ୟେୟ ହେଉ ଶ୍ରୀ ପ୍ରଭୁ ଚିନ୍ତନ
ଅନ୍ୟ ଚିନ୍ତା ନାହିଁ ପ୍ରୟୋଜନ
ହେ ପୁରୁଷୋତ୍ତମ,
ତୁଚ୍ଛ ଭୋଗ, ଚଉଦ ଭୁବନ ।

ଆରେ ମନ ! ହୁଅ ବ୍ରହ୍ମମୁଖୀ
ହେବୁ ତୁହି ବ୍ରହ୍ମାନନ୍ଦେ ସୁଖୀ
କର ନିର୍ଲିପ୍ତ ଜୀବନ,
ହୋଇଯିବୁ, 'ମନାତୀତ ମନ' ।

ପାତାଳମାବିଶସି ଯାସି ନଭୋ ବିଲଂଘ୍ୟ
ଦିଙ୍ମଣ୍ଡଳ ଭ୍ରମସି ମାନସ ଚାପଳେନ,
ଭ୍ରାନ୍ତ୍ୟାପି ଜାତୁ ବିମଳଂ କଥମାତ୍ମନୀନଂ
ନ ବ୍ରହ୍ମ ସଂସ୍ମରସି ନିର୍ବୃତିମେଷି ଯେନ । ୭୦ ।

ଚପଳ ମନ ଆରେ ଚପଳାସମ
କ୍ଷଣେ ଉଭାସି କାହିଁ ହେଉତୁ ଲୀନ,
କ୍ଷଣକେ ହେଉ ତୁହି ପାତାଳ ଗାମୀ
ଅପରକ୍ଷଣେ ଲଙ୍ଘୁ ଆକାଶ ଭୂମି ।

ନିମିଷେ ଭ୍ରମିପାରୁ ଦିଗମଣ୍ଡଳ
ଅସ୍ଥିର ଅଟୁ ତୁହି ସଦା ଚଞ୍ଚଳ,
ଅସୀମେ ଭ୍ରମଣରେ ଥାଏ ତୋ' ଧ୍ୟାନ
ଅସୀମାନନ୍ଦ ଲାଭେ, ନ ହେଉ ମଗ୍ନ ।
ଏ'କି ବିଚାର
ଅଟଇ ତୋର ।।

ଭ୍ରମେ ତୁ ଭ୍ରମୁ ବ୍ରହ୍ମ ମଣ୍ଡଳେ ଯାଇ
ପରମାନନ୍ଦ ଲାଭ କରିବା ପାଇଁ,
ସେ ବ୍ରହ୍ମ ପରା ତୋର ଆତ୍ମରେ ସ୍ଥିତ
ହେଉନୁ କିମ୍ପା ତୁହି ଧ୍ୟାନେ ଆତ୍ମସ୍ଥ ।।
ବ୍ରହ୍ମ ଦର୍ଶନ,
ଲଭି ହୋଇବ ତୋର ତୃପତ ମନ ।

•

ମନ ସମ୍ବୋଧନ ସମାପ୍ତ

# ନିତ୍ୟାନିତ୍ୟ ବସ୍ତୁବିଚାର

କିଂ ବେଦୈଃ ସ୍ମୃତିଭିଃ ପୁରାଣପଠନୈଃ ଶାସ୍ତ୍ରୈର୍ମହା ବିସ୍ତରୈଃ
ସ୍ୱର୍ଗ ଗ୍ରାମକୁଟୀ ନିବାସ ଫଳଦୈଃ କର୍ମକ୍ରିୟା ବିଭ୍ରମୈଃ ।
ମୁକ୍ତ୍ୱୈ କଂ ଭବଦୁଃଖ ଭାର ରଚନା ବିଧ୍ୱଂସ କାଳାନଳଂ
ସ୍ୱାତ୍ମାନନ୍ଦ ପଦ ପ୍ରବେଶ କଳନଂ ଶେଷୈର୍ବଣିଗ୍‌ବୃତ୍ତିଭିଃ ।୭୧ ।

ଅନିତ୍ୟ ନିତ୍ୟର ଖେଳ
ଚାଲିଛି ସଂସାରେ,
ସେ ଯେଉଁ ପ୍ରକାରେ -
ତାହା କରନ୍ତି ଗ୍ରହଣ
ଲଭନ୍ତି ସେ ସୁଖ ବା କଷଣ ।

କର୍ମ କ୍ରିୟା ପରିହରି ଯେ କରେ ପଠନ
ସ୍ମୃତି ଶାସ୍ତ୍ର ବେଦ ଓ ପୁରାଣ,
ସେ ପଠନେ ନାହିଁ ପରିତୋଷ
ନ ମିଳଇ ଆତ୍ମାକୁ ସନ୍ତୋଷ ।

ଗ୍ରାମ କୁଟୀର ନିବାସ ଦିଏ ସ୍ୱର୍ଗ ସୁଖ
ତୃପତି ଅଶେଷ,
ତାହା ଅଟେ ଆନନ୍ଦର ଭୂମି
ଅଯଥାରେ ନହୁଅ ତୁ ଭ୍ରମି ।

ଆନନ୍ଦରେ ନିଜ କର୍ମେ ହୁଅ ଅଗ୍ରସର
ନିରର୍ଥକ ବାଣିଜ୍ୟ ବେପାରେ,
ହୁଅ ତୃପ୍ତ ସ୍ୱ ବୃତ୍ତି ସାଧନେ
ଆତ୍ମାନନ୍ଦ ମିଳିବ ଜୀବନେ ।

ଯତୋ ମେରୁଃ ଶ୍ରୀମାନ୍ନିପତତି ଯୁଗାନ୍ତାଗ୍ନି ବଳିତଃ
ସମୁଦ୍ରାଃ ଶୁଷ୍ୟନ୍ତି ପ୍ରଚୁର ମକରଗ୍ରାହନିଳୟାଃ ।
ଧରା ଗଚ୍ଛତ୍ୟନ୍ତଂ ଧରଣିଧରପାଦୈରପି ଧୃତା
ଶରୀରେ କା ବାର୍ତ୍ତା କରିକଲଭ କର୍ଣ୍ଣାଗ୍ର ଚପଳେ । ୭୨ ।

ପ୍ରଳୟା ନଳେ ଗ୍ରାସ ମେରୁ ପର୍ବତ
ହୋଇବ ଯଦି ଶୁଷ୍କ ସାଗର ସପ୍ତ,
ଧରଣୀଧର *ଅଷ୍ଟ ପର୍ବତମାଳା
ରସାତଳ ଗମିବେ ଯଦି ଅଚଳା -
ତଥାପି କେ ପାରିବ ଲଙ୍ଘି ନିୟମ
ସଂସାର ନୀତି, ଜନ୍ମ, ଜରା, ମରଣ !
ଏ' ତ ନିୟତି,
ଏ' ବିଶ୍ୱ ଜୀବନର ଅଲଂଘ୍ୟ ଗତି ।

ଗାତ୍ରଂ ସଙ୍କୁଚିତଂ ଗତି ର୍ବିଗଳିତା ଭ୍ରଷ୍ଟାଚ ଦନ୍ତାବଳି
ଦୃଷ୍ଟିର୍ନଶ୍ୟତି ବର୍ଦ୍ଧତେ ବଧିରତା ବକ୍ତ୍ରଂ ଚ ଲାଳାୟତେ ।
ବାକ୍ୟଂ ନାଦ୍ରିୟତେ ଚ ବାନ୍ଧବଜନୋ ଭାର୍ଯ୍ୟା ନ ଶୁଶ୍ରୂଷତେ
ହା କଷ୍ଟଂ ପୁରୁଷସ୍ୟ ଜୀର୍ଣ୍ଣବୟସଃ ପୁତ୍ରୋଽପ୍ୟମିତ୍ରାୟତେ । ୭୩ ।

ଜରା ଜୀବନ
ଭରା କଷଣ
ଶୂନ୍ୟତାର ଏ' ରିକ୍ତଭୂମି,
ଶୀର୍ଣ୍ଣ ଶରୀର
ଗତି ମନ୍ଥର
ଗଳିତ ଅଟଇ ଦନ୍ତଶ୍ରେଣୀ ।

---

*ଅଷ୍ଟପର୍ବତ (କୁଳାଚଳ) : ହିମାଳୟ, ମହେନ୍ଦ୍ର, ମଳୟ, ସହ୍ୟ, ଶୁକ୍ତିମାନ, ଋକ୍ଷ, ବିନ୍ଧ୍ୟ, ପାରିପାତ୍ର ।

ଦୃଷ୍ଟି ଦୁର୍ବଳ
କର୍ଣ୍ଣ ବଧିର
ମୁଖୁ ନିସୃତ ଲାଳର ଧାରା
ବନ୍ଧୁ ବଧିର
ନଶୁଣେ ଗୀର
ଭାର୍ଯ୍ୟା ନଅଟେ ସୁସେବାଶୀଳା ।
ପୁରୁଷଙ୍କର
କି ହାହାକାର
ଅଟଇ ଦୀର୍ଘ ଜରା ଜୀବନ
ତା' ପ୍ରିୟ ପୁତ୍ର
ହୁଏ ଅମିତ୍ର
ଦିଅଇ ଜୀବନେ ବହୁ କଷଣ ।
ଜରା ଜୀବନ ଏ' ଜରା ଜୀବନ !!

ବର୍ଣ୍ଣଂ ସିତଂଝଟିତି ବୀକ୍ଷ୍ୟ ଶିରୋରୁହାଣାଂ
ସ୍ଥାନଂ ଜରା ପରିଭବସ୍ୟ ତଥା ପୁମାଂସଂ ।
ଆରୋପିତାସ୍ଥି ଶତକଂ ପରିହୃତ୍ୟ ଯାନ୍ତି
ଚଣ୍ଡାଳ କୂପମିବ ଦୂରତରଂ ତାରୁଣ୍ୟଃ । ୭୪ ।

ବୃଦ୍ଧ ଶରୀରେ ନାହିଁ ତାରୁଣ୍ୟ ଶୋଭା
ବସିଛି ତହିଁ ଅସ୍ଥିମାଳାର ସଭା ।
ମସ୍ତକେ ଫୁରୁଫୁରୁ ଧବଳ କେଶ
ପ୍ରକାଶ କରେ ଜରା ଜୀବନ ବେଶ ।

ସମ୍ମାନ ନ ମିଳଇ, ଗୃହରେ ତା'ର
ଭାବନ୍ତି ନାହିଁ ତାକୁ କେହି ନିଜର,
'ଚଣ୍ଡାଳ କୂପ' ସମ ନିଷିଦ୍ଧ ସିଏ
ହାଡମାଳେ ଭରିଛି, ଛୁଇଁବ କିଏ !

ସେପରି ଜରାଗ୍ରସ୍ତ, ଅଟେ ଅଲୋଡା
କେ ଆସି ପାଶେ ତା'ର ନହୁଏ ଛିଡା,
ମିଳେନି 'ଆହା' ପଦ କା'ଠାରୁ ତାକୁ
ସେ ଅଟେ ଜରାଗ୍ରସ୍ତ ଅଛି ଯିବାକୁ ।
ଏ' ତ ସଂସାର ଗତି,
ଅତି ରହସ୍ୟମୟ, ବିଚିତ୍ର ଅତି ।

ଯାବତ୍ସ୍ୱସ୍ଥମିଦଂ ଶରୀରମରୁଜଂ ଯାବଜ୍ଜରା ଦୂରତୋ
ଯାବଚ୍ଚେନ୍ଦ୍ରିୟଶକ୍ତିରପ୍ରତିହତା ଯାବତ୍କ୍ଷୟୋ ନାୟୁଷଃ
ଆତ୍ମଶ୍ରେୟସି ତାବଦେବ ବିଦୁଷା କାର୍ଯ୍ୟଃ ପ୍ରଯତ୍ନୋ ମହାନ୍
ସଂଦୀପ୍ତେ ଭବନେ ତୁ କୂପଖନନଂ ପ୍ରତ୍ୟୁଦ୍ୟମଃ କୀଦୃଶଃ । ୭୫ ।

ଦୂରେ ବହୁଦୂରେ
ସଦା ରହିଥାଏ ଜରା,
ସୁସ୍ଥ ଶକ୍ତ ଶରୀର ବାହାରେ
ପ୍ରଲୋଭିତ ଗ୍ରାସିବାକୁ ପରା !

ଯେ ପର୍ଯ୍ୟନ୍ତ ରହିଥାନ୍ତି ଇନ୍ଦ୍ରିୟ ପ୍ରବଳ
ରହିଥାଏ ଦୃଷ୍ଟିଶକ୍ତି ଅତ୍ୟନ୍ତ ପ୍ରଖର,
ଶରୀରେ ଅଦମ୍ୟଶକ୍ତି
ଆୟୁବଳ ନଥାଏ ତା' ସରି,
ଗୁମ୍ଫାବାସୀ ଥାଏ ଜରା ତା' ଶକ୍ତିକୁ ଡରି ।

ଜୀବନର ଏ ମଧୁ ମୁହୂର୍ତ୍ତ
ଉପଭୋଗ୍ୟ ଅଟେ ସଦା ଆହେ ସୁଧୀବୃନ୍ଦ ।
ବେଳ ଥାଉ ହୁଅ ସାବଧାନ
ସୁଯୋଗ ପାଇଲେ ଜରା
ମାଡି ଆସି, କରିବ ଗର୍ଜନ ।
କବଳିତ କରିବ ସେ ଆସି
ଏ' ଶରୀର ଶୌର୍ଯ୍ୟ ଶିରୀ ଗ୍ରାସି ।।

ତପସ୍ୟନ୍ତଃ ସନ୍ତଃ କିମଧିନିବସାମଃ ସୁରନଦୀଂ
ଗୁଣୋଦାରାନ୍ ଦରାନୃତ ପରିଚରାମଃ ସବିନୟଂ ।
ପିବାମଃ ଶାସ୍ତ୍ରୌଘାନୃତ ବିବିଧ କାବ୍ୟାମୃତରସା -
ନ୍ନ ବିଦ୍ମଃ କିଂ କୁର୍ମଃ କତିପୟ ନିମେଷାୟୁଷି ଜନେ । ୭୬ ।

ବିଭ୍ରାନ୍ତିରେ ଭରି ଅଛି ମନ
କେଉଁଠୁ ମିଳିବ ଶାନ୍ତି
କେଉଁ କର୍ମେ ଲିପ୍ତ ହେବ ପୁଣ ।

ତପୋମଗ୍ନ, ହେବ କି ତାପସ
ଗଙ୍ଗାତୀରେ କରିବ କି ବାସ !
ସମ୍ମୋହିତ ହେବ ଅବା ଶୃଙ୍ଗାର ବିଳାସେ
କାବ୍ୟ ଶାସ୍ତ୍ର ରସାମୃତ  ପ୍ରଣୟିନୀ ପାଶେ ।

ସେ ହରଷେ କରିବ କି ପାନ,
ହେବ ମୁଗ୍ଧ ମନ,
ଅଟଇ କ୍ଷଣ ଭଙ୍ଗୁର ଏ' ଜୀବନ ସଦା
କ୍ଷଣସ୍ଥାୟୀ କୁଜ୍‌ଝଟିକା ଯଥା ।

ଏତେ କ୍ଷୁଦ୍ର ଜୀବନ ତା' ନେଇ
କର୍ମର ବିପୁଳ ବନେ -
କାହାକୁ ସେ ଆଦରିବ ଯାଇ !
ଲକ୍ଷ୍ୟ ସ୍ଥଳେ ପାରୁନି ପହଞ୍ଚି
ଛନ୍ଦ ହୀନ ଅଟେ ତା' ବିପଞ୍ଚୀ ।

ଦୁରାରାଧ୍ୟାଶ୍ଚାମୀ ତୁରଗ ଚଳଚିତ୍ତାଃ କ୍ଷିତିଭୁଜୋ
ବୟଂ ଚ ସ୍ଥୂଳେଚ୍ଛାଃ ସୁମହତିଫଳେ ବଦ୍ଧ ମନସଃ ।
ଜରା ଦେହଂ ମୃତ୍ୟୁର୍ହରତି ଦୟିତଂ ଜୀବିତମିଦଂ
ସଖେ ନାନ୍ୟଚ୍ଛ୍ରେୟୋ ଜଗତି ବିଦୁଷୋଽନ୍ୟତ୍ର ତପସଃ ।୭୭ ।

ସେ ରାଜମନ
ଅତି ଗହନ ସେ ଅତି ଗହନ
ଅତି ଚଞ୍ଚଳ,
ମିଳେ ନାହିଁ କେବେ ତା' ଥଳକୂଳ ।
ତୁରଗ ଗତିଠୁ ଚଞ୍ଚଳ ଅତି
ଅତି ଅମାନିଆ ଅଟେ ତା' ମତି,
ସେବା ଯୋଗ୍ୟ ନୁହେଁ ସେପରି ରାଜା
ପରିହର ତାକୁ, ନ'କର ପୂଜା ।

କାମନା ବାସନା ନ'ରଖ ମନେ
ଧନାସକ୍ତ ହୁଅ ନାହିଁ ଜୀବନେ
ଆସିଲେ ଜରା,
ହୋଇବ ଜୀବନେ ସର୍ବହରା ।
ସର୍ବାଙ୍ଗ ଶରୀର ହୋଇବ କ୍ଷୀଣ
ମରଣ ଯଜ୍ଞରେ ଆହୁତି ପଡିବ
ହୋଇବ ଲୀନ ।
ଅନିତ୍ୟ ସଂସାରେ ତପସ୍ୟା ସାର
ଶ୍ରେୟ ପଥ ଶ୍ରେୟ କର୍ମ ବିଚାର ।

ମାନେ ମ୍ଳାୟିନି ଖଣ୍ଡିତେ ଚ ବସୁନି ବ୍ୟର୍ଥେ ପ୍ରୟାତେଽର୍ଥିନି
କ୍ଷୀଣେ ବନ୍ଧୁଜନେ ଗତେ ପରିଜନେ ନଷ୍ଟେ ଶନୈ ର୍ଯୌବନେ ।
ଯୁକ୍ତଂ କେବଳ ମେତଦେବ ସୁଧିୟାଂ ଯଜ୍ଜହ୍ନୁ କନ୍ୟାପୟଃ
ପୂତ ଗ୍ରାବଗିରୀନ୍ଦ୍ର କନ୍ଦରତଟୀକୁଞ୍ଜେ ନିବାସଃ କ୍ୱଚିତ୍ । ୭୮ ।

ଯାଚକ ଜୀବନ ହୀନ ଅଟଇ ସର୍ବଦା
ଭଗ୍ନ ମନୋରଥ ତା'ର ଧନ ମାନ ସଦା,
ଯୌବନ ହୋଇଲେ ଗତ, ସମସ୍ତେ ବିମୁଖ
ଭୃତ୍ୟ କରିଥାଏ ତ୍ୟାଗ, ବନ୍ଧୁ ପରାଙ୍ମୁଖ ।
ଏହା ଅଟେ ଏ' ସଂସାର ନୀତି
ଅଭ୍ରାନ୍ତ ତା' କ୍ରୂର ପରିଣତି ।

ସଂସାର ବିରାଗୀ ଜନେ ନଥାଏ ଏ ଭୟ
ନହୁଏ ବ୍ୟଥିତ ସିଏ ଶଙ୍କାରେ ଅଥୟ,
ଜାହ୍ନବୀ ପବିତ୍ର ନୀର ତା' ତଟର ଗିରି -
ଗୁମ୍ଫାରେ ନିବାସ, ମନ ଉଠଇ ଉଚ୍ଛୁଳି
ତା'ର ବିପୁଳିତ ବୁକୁ,
ପ୍ରଶସ୍ତ କରାଇଥାଏ ଯତି ହୃଦୟକୁ ।

ରମ୍ୟାଶ୍ଚନ୍ଦ୍ର ମରୀଚୟସ୍ତୃଣବତୀ ରମ୍ୟା ବନାନ୍ତସ୍ଥଳୀ
ରମ୍ୟଂ ସାଧୁସମାଗମାଗତି ସୁଖଂ କାବ୍ୟେଷୁ ରମ୍ୟା କଥାଃ ।
କୋପୋପାହିତ ବାଷ୍ପବିନ୍ଦୁ ତରଳଂ ରମ୍ୟଂ ପ୍ରିୟାୟା ମୁଖଂ
ସର୍ବଂ ରମ୍ୟମନିତ୍ୟତା ମୁପଗତେ ଚିତ୍ତେ ନ କିଞ୍ଚିତ୍ ପୁନଃ ।୭୯ ।

ଚନ୍ଦ୍ରମୟୀ ଜ୍ୟୋସ୍ନାଭିଜା ରାତି
ରମ୍ୟ ବନ ଘନ ତୃଣବତୀ
କି ଆନନ୍ଦମୟୀ,
ଆଗୋ ରମ୍ୟା ! ରମଣୀୟା ଅୟୀ !

ରମ୍ୟ, ସାଧୁ ସମାଗମ ପୀଠ
ରମ୍ୟ, କାବ୍ୟ କଥନିକା ଶତ
ସର୍ବେ ମନୋରମ,
ଶାନ୍ତି ଭରା ମୁଗ୍ଧ ଅନୁପମ ।

ପ୍ରଣୟିନୀ, ଗୋ ରମ୍ୟା ରମଣୀ !
ପ୍ରୀତି, କୋପ, ଅଶ୍ରୁ ନିର୍ଝରିଣୀ
ଚର୍ଚ୍ଚିତ ମୁଖଶ୍ରୀ -
ବିନୋଦିନୀ ଶ୍ରେୟସୀ ପ୍ରେୟସୀ ।

ଏ ସଂସାର ଅସାର ଅଳୀକ
ଏ ଲାବଣ୍ୟ ସୌନ୍ଦର୍ଯ୍ୟ ମହକ,
ସଙ୍ଗୀତ ସୁଷମା,
ଜୀବନର ବ୍ୟର୍ଥ ସା.ରେ.ଗା.ମା ।

ରମ୍ୟ ହର୍ମ୍ୟତଳଂ ନକିଂ ବସତୟେ ଶ୍ରାବ୍ୟଂ ନ ଗେୟାଦିକଂ
କିମ୍ଵା ପ୍ରାଣସମା ସମାଗମ ସୁଖଂ ନୈବାଧିକଂ ପ୍ରୀତୟେ ।
କିନ୍ତୁ ଭ୍ରାନ୍ତ ପତଙ୍ଗ ପକ୍ଷ ପବନ ବ୍ୟାଲୋଳ ଦୀପାଙ୍କୁର
ଛାୟା ଚଞ୍ଚଳ ମାକଳଯ୍ୟ ସକଳଂ ସନ୍ତୋ ବନାନ୍ତଂ ଗତାଃ । ୮୦ ।

ରମ୍ୟ ହର୍ମ୍ୟେ ବାସ
ଅଛି ନୃତ୍ୟ ସଙ୍ଗୀତର ବିପୁଳ ବିଳାସ,
ଆନନ୍ଦରେ ପ୍ରମତ୍ତ ହୃଦୟ
କେଡ଼େ ମନୋମୟ ।

ପ୍ରୀତିମୟୀ ପ୍ରାଣସମା ପ୍ରିୟା
ଶୃଙ୍ଗାର ସମ୍ଭୋଗେ ମତ୍ତ, ଭାବ ଦିଆନିଆ -
ଚିତ୍ତ ବିନୋଦିନୀ,
ଶାନ୍ତି ଆଉ ସନ୍ତୋଷର ସୁଧା ସୁରଧୁନୀ ।

ପ୍ରୀତି ପ୍ରଦୀପର ଶିଖା ଉଠଇ ଶିହରୀ
ମୋହ ମୁଗ୍ଧ ଭ୍ରାନ୍ତ ପତଙ୍ଗର
ଚଳମାନ ପକ୍ଷ ପବନରେ
ଯାଏ ତା' ଚହଲି ।
ଦେଖି ଏହି ଦୃଶ୍ୟ,
ସଂସାର ବୈରାଗ୍ୟ ସାଥେ ଘୋଟଇ ନୈରାଶ୍ୟ ।

ବନ ପଥେ ବିଜ୍ଞଜନ କରନ୍ତି ଗମନ
ଅମୃତ ଅୟନ ତା'ଙ୍କ ଅମୃତ ଅୟନ,
ଅଟେ ତ୍ୟାଗ ପଥ,
ସଂସାରୀ ଜୀବନ ପାଇଁ ଯା' କଠୋର ବ୍ରତ ।

•

ନିତ୍ୟ ଅନିତ୍ୟ ବସ୍ତୁ ବିଚାର ସମାପ୍ତ

# ଶିବାର୍ଚ୍ଚନା

ଆସଂସାରାତ୍ତ୍ରିଭୁବନମିଦଂ ଚିନ୍ୱତାଂ ତାତ ତାଦୃକ୍
ନୈବାସ୍ମାଙ୍କ ନୟନପଦବୀଂ ଶ୍ରୋତ୍ରମାର୍ଗଂ ଗତୋ ବା ।
ଯୋଽୟଂ ଧତ୍ତେ ବିଷୟ କରିଣୀଗାଢ଼ଗୂଢ଼ା ଭିମାନ -
କ୍ଷୀବସ୍ୟାନ୍ତଃ କରଣ କରିଣଃ ସଂଯମାନାୟ ଲୀଳାଂ । ୮୧ ।

ଏ' ତିନି ଭୁବନରେ
ମିଳିନି ଜନ୍ମ କା'ରେ
ସାଧିବେ 'ମନ' ମତ୍ତଗଜକୁ,
ଦେଖିନି ଆଖି କାରେ
ଶୁଣିନି ଶ୍ରବଣରେ
ଗଜ ସ୍ତମ୍ଭର ବନ୍ଧ କାରକୁ ।
ନୁହନ୍ତି ଲଭ୍ୟ ସିଏ ସଂସାରେ
କେବଳ ଶିବ ଶକ୍ତି,
ଦୁର୍ଜ୍ଜୟ ଚଳମତି-
ପାରିବ ସଂଯମି ସେ ଅଚିରେ ।
ଅଟଇ ଦୁର୍ନିବାର ଏ ମନ,
ସହଜ ନୁହେଁ ତା'ର ସାଧନ ।
ମାନେନି ବାରଣ ସେ କାହାର,
କେବଳ ଶିବଶକ୍ତି
ଦୁର୍ଜ୍ଜୟ ମତ୍ତ ମତି
ପାରଇ କରି ଦୃଢ଼େ ପ୍ରହାର ।

ଯଦେତତ୍ ସ୍ୱଚ୍ଛନ୍ଦଂ ବିହରଣମକାର୍ପଣ୍ୟ ମଶନଂ
ସହାର୍ଯ୍ୟୈଃ ସଂବାସଃ ଶ୍ରୁତମୁପଶମୈକବ୍ରତ ଫଳଂ ।
ମନୋ ମନ୍ଦସ୍ପନ୍ଦଂ ବହିରପି ଚିରସ୍ୟାପି ବିମୃଶ -
ନ୍ନ ଜାନେ କସ୍ୟୈଷା ପରିଣତି ରୁଦାରସ୍ୟ ତପସଃ ୮୨ ।

ଜାଣି ମୁଁ ପାରୁନି -
ଏହା କେଉଁ ତପସ୍ୟାର ଫଳ
ସହାୟକ କେଉଁ ଧର୍ମବଳ,
ମଣିଷ ହୁଅଇ ମୁଗ୍ଧ
ମୁକ୍ତ ବିହରଣେ
ଲଭଇ ସାଧୁ ସନ୍ଥଙ୍କ
ସାନିଧ ଜୀବନେ ।

ମିଳଇ ଅମୃତ ସମ
ସୁସ୍ୱାଦୁ ଭୋଜନ,
ଶାନ୍ତି ମୁକ୍ତିପ୍ରଦ ଶାସ୍ତ୍ର
ପଠନ ଶ୍ରବଣ ।
ଲଭଇ ଅନ୍ତଃକରଣ
ବିପୁଳ ବିସ୍ତାର,
ବୁଦ୍ଧି ବିବେକ ଓ ପ୍ରଜ୍ଞା
ଚିନ୍ତନ ସମ୍ଭାର
ଅଭେଦ୍ୟ ରହସ୍ୟ,
ଜାଣିବାକୁ ବିପୁଳ ପ୍ରୟାସ ।

ଜୀର୍ଣ୍ଣାଏବ ମନୋରଥାଶ୍ଚ ହୃଦୟେ ଯାତଂ ଚ ତଦ୍‌ଯୌବନଂ
ମ୍ଳାନ ସର୍ବା ଗୁଣାଶ୍ଚ ବନ୍ଧ୍ୟଫଳତାଂ ଯାତା ଗୁଣଜ୍ଞୈର୍ବିନା ।
କିଂ ଯୁକ୍ତଂ ସହସାଭ୍ୟୁପୈତି ବଳବାନ୍ କାଳଃ କୃତାନ୍ତୋଽକ୍ଷମୀ
ହା ଜ୍ଞାତଂ ମଦନାନ୍ତକାଂଘ୍ରି ଯୁଗଳଂ ମୁକ୍ତ୍ୱାସି ନାନ୍ୟାଗତିଃ । ୮୩ ।

ସକଳ ମନୋରଥ ଆଜି ଅପୂର୍ଣ୍ଣ
ବିଗତ ହୋଇଲାଣି ଭରା ଯୌବନ,
କାମନା ଅଭିଳାଷ ବାସନା ରାଜି
ସବୁତ ଉପେକ୍ଷିତ ପଡିଛି ଭାଜି ।

ନାହାନ୍ତି ଗୁଣଗ୍ରାହୀ ସଜ୍ଜନ ଗଣ
ବୁଝିବେ ସହୃଦୟେ ସମସ୍ତ ଗୁଣ,
ହୋଇଛି ସବୁ ମ୍ଳାନ ଗତାୟୁ ନର
ଅଟଇ ବଳବାନ କୃତାନ୍ତ ବଳ
ନେବ ସେ ହରି,
ଶିବ ଶରଣ ବିନା କେପାରେ ତରି !
କେ' ପାରେ ତ'ରି ।

ମହେଶ୍ୱରେ ବା ଜଗତା ମଧୀଶ୍ୱରେ
ଜନାର୍ଦ୍ଦନେ ବା ଜଗଦନ୍ତ ରାତ୍ମନି ।
ନ ବସ୍ତୁଭେଦ ପ୍ରତିପତ୍ତିରସ୍ତି ମେ
ତଥାପି ଭକ୍ତି ସ୍ତରୁଣେନ୍ଦୁ ଶେଖରେ । ୮୪ ।

ଏକ ଈଶ୍ୱର ସିଏ ବିବିଧ ନାମେ
ହୁଅନ୍ତି ପ୍ରକାଶିତ ବିଶ୍ୱ ଭୁବନେ,
ଦୀନଜନଙ୍କୁ ତ୍ରାଣ କରି କଷଣୁ
ଦିନ ବାନ୍ଧବ ନାମ ବହନ୍ତି ତେଣୁ -
ସେ ଅନ୍ତର୍ଯ୍ୟାମୀ,
ସର୍ବ ଅନ୍ତର କଥା ଜାଣନ୍ତି ପୁଣି ।

ଅଟନ୍ତି ଜନାର୍ଦ୍ଦନ ମଧୁସୂଦନ
ବିଶ୍ୱ ଜୀବନ ପତି ସେ ନାରାୟଣ,
ମଙ୍ଗଳମୟ ଶିବ ସେ ମହେଶ୍ୱର
ଏ' ବିଶ୍ୱ ଜଗତର ସେ ଅଧୀଶ୍ୱର
'ଶଙ୍କର' ନାମ,
ସବୁଠୁ ଭକ୍ତିମୟ ଅଟଇ ମମ ।
ଅଟଇ ମମ ।

ସ୍ଫୁରତ୍‌ସ୍ଫାରଜ୍ୟୋସ୍ନା ଧବଳିତତଳେ କ୍ୱାପି ପୁଳିନେ
ସୁଖାସୀନାଃ ଶାନ୍ତଧ୍ୱନିଷୁ ରଜନୀଷୁ ଦ୍ୟୁସରିତଃ ।
ଭବାଭୋଗାଦ୍‌ବିଗ୍ନାଃ ଶିବ ଶିବ ଶିବେତ୍ୟୁଚ୍ଚବଚସଃ
କଦା ଯାସ୍ୟାମୋଽନ୍ତର୍ଗତ ବହୁଳ ବାଷ୍ପାକୁଳ ଦଶାଂ । ୮୫ ।

ଭବ ବିଷୟାସକ୍ତ
ସୁଖେ ସଦା ଆସକ୍ତ,
ଅଟନ୍ତି ଅତୃପ୍ତ ଏ ସଂସାରୀ ଜନ,
ଭୋଗ କ୍ଷୁଧା ପ୍ରବଳ
ନଳିଭେ ଜ୍ୱାଳା ତା'ର
କାମନା ଉତ୍କଣ୍ଠିତ ସର୍ବଦା ମନ ।

ଆସିବ କେବେ ସେହି ମୁହୂର୍ତ୍ତ ଶୁଭ !
ଜାହ୍ନବୀ ତୀରେ ବାସ
କରି ହେବେ ହରଷ,
ପିଇବେ ଜ୍ୟୋସ୍ନାମୃତ ଭଜିବେ ଶିବ !
ଲଭିବେ ଶାନ୍ତି,
ମନରୁ ଯିବ ଲିଭି ସକଳ ଭ୍ରାନ୍ତି ।
ସେବ ଶିବ ପୟର
ଚିର ମଙ୍ଗଳମୟ ସେ ମହେଶ୍ୱର ।

ଅହୌ ବା ହାରେ ବା ବଳବତୀ ରିପୌ ବା ସୁହୃଦି ବା
ମଣୌ ବା ଲୋଷ୍ଟ୍ରେ ବା କୁସୁମ ଶୟନେ ବା ଦୃଷଦି ବା ।
ତୃଣେ ବା ମେରୌ ବା ମମ ସମଦୃଶୋ ଯାନ୍ତୁ ଦିବସାଃ
କ୍ୱଚିପୁଣ୍ୟା ରଣ୍ୟେ ଶିବ ଶିବ ଶିବେତି ପ୍ରଳପତଃ । ୮୬ ।

ଜୀବନକୁ ଭେଟିବାକୁ ସର୍ପ ସମାକୁଳେ
ଅବା କୁସୁମ ମାଳାରେ
ନୁହେଁ ମୁଁ ବିମୁଖ,
ଯା' ଆସୁଛି ତାହା ଭାଗ୍ୟ ଭୋଗ୍ୟ ।
ଶତ୍ରୁଙ୍କ ଗହଣେ ଅବା କଟୁ ଏ ଜୀବନ
ମିତ୍ର ମିତ୍ରତାରେ ଅବା ହେଉ ପରିପୂର୍ଣ୍ଣ,
ମିଳୁ ପୁଷ୍ପ, ପାଷାଣ, ବା ତୃଣ ଶଯ୍ୟା ମୋତେ
ସୁବର୍ଣ୍ଣ ମଣ୍ଡିତ ଶଯ୍ୟା ମିଳୁବା ଏ ପଥେ -
ମୋ ଦୃଷ୍ଟିରେ ସମସ୍ତେ ସମାନ,
ଅନୁଭବେ ନାହିଁ ଭିନ୍ନାଭିନ୍ନ ।

ବ୍ୟାକୁଳେ ଚାହିଁଛି ସେଇ ପୁଣ୍ୟ ବନବାସ
ଶିବ ନାମ ଆରାଧନେ କରିବାକୁ ଜୀବନକୁ ତୋଷ,
ଅନିଶ୍ଚିତ ଏ ଜୀବନେ
ଏତିକି ଅଭୀପ୍ସା,
କରିଲେ କରିବେ ପୂର୍ଣ୍ଣ,
ପ୍ରଭୁ ଶିବ
ଏକାନ୍ତ ଭରସା ।

ବିତୀର୍ଣ୍ଣେ ସର୍ବସ୍ୱେ ତରୁଣ କରୁଣା ପୂର୍ଣ୍ଣ ହୃଦୟାଃ
ସ୍ମରନ୍ତଃ ସଂସାରେ ବିଗୁଣ ପରିଣାମାଂ ବଧିଗତିଂ
ବୟଂ ପୁଣ୍ୟାରଣ୍ୟେ ପରିଣତ ଶରଚ୍ଚନ୍ଦ୍ର କିରଣା -
ସ୍ତ୍ରୀ ଯାମାଂ ନେଷ୍ୟାମୋ ହର ଚରଣ ଚିନ୍ତୈକ ଶରଣାଂ । ୮୭ ।

ଚାହୁଁଛି ମନ
ଘନ ଅରଣ୍ୟ
ଏ ମର୍ତ୍ତ୍ୟ ମଣ୍ଡଳର ପାବନ ଭୂମି,
ହୁଅନ୍ତା ମଗ୍ନ, ଦିବ୍ୟ ଭୁବନେ ଭ୍ରମି ।

ସତ୍‌ପାତ୍ରେ ସର୍ବଧନ କରି ପ୍ରଦାନ
ଜଗତେ ସର୍ବଭୂତେ କରୁଣା ଦାନ -
କରି, ମଧୁର ଆଉ ଉଦାର ଚିତ୍ତେ,
ମିଶି ଯାଆନ୍ତା ବନ ଜୀବନ ସ୍ରୋତେ ।

ମହା ଶୂନ୍ୟତା ମାଖି ଅନ୍ତରେ ତା'ର
ହୁଅନ୍ତା ଶିବ ମୁଖୀ ଧାୟୀ ପୟର,
ଶିବ ଭକ୍ତିରେ ଭରି ଦିଅନ୍ତା ପ୍ରାଣ
ଶିବ ଧିଆନେ ମତ୍ତ ରହନ୍ତା ମନ
କାମନା ମୋର,
ପୂରଣ କରିବେକି ପ୍ରଭୁ ଶଙ୍କର ! ।

କଦାବାରାଣସ୍ୟାଂ ମରତଟିନୀରୋଧସି ବସନ୍
ବସାନଃ କୌପୀନଂ ଶିରସି ନିଦଧାନାଽଞ୍ଜଳି ପୁଟଂ ।
ଅୟେ ଗୌରୀନାଥ ତ୍ରିପୁର ହରଶମ୍ଭୋ ତ୍ରିନୟନ
ପ୍ରସୀଦେତି କ୍ରୋଶନ୍ନିମିଷମିବ ନେଷ୍ୟାମି ଦିବସାନ୍ । ୮୮ ।

କାଶୀ ଗଙ୍ଗାତୀରେ ବସନ୍ତି
ପିନ୍ଧି କୌପୀନ ବାସ,
ହୁଅନ୍ତି ତପରେ ମଗନ
ଶିରେ ଅଞ୍ଜଳି ପୁଟ ।

ତ୍ରିପୁରାରି ପ୍ରଭୁ ତ୍ରିନେତ୍ର
ଗୌରୀନାଥ ଶଙ୍କର,
ହୁଅ ପ୍ରଭୁ ତୁମେ ପ୍ରସନ୍ନ
ପୂରୁ କାମନା ମୋର ।
ସେ ଶୁଭ ବେଳାକୁ ଚାହିଁଛି
କେବେ ଆସିବ ପୁଣ
ପୂରଣ କରିବେ ଶଙ୍କର
ଶୁଭ କାମନା ମମ ।
ମନେ ବିକଳ ଭାବ
ଶୁଣିବେ, ଶୁଣିବେ ନିଶ୍ଚୟ
ପ୍ରଭୁ ଶଙ୍କର ଶିବ ।

ସ୍ନାତା ଗାଙ୍ଗୈଃ ପୟୋଭିଃ ଶୁଚି କୁସୁମ ଫଳୈରର୍ଚୟିତ୍ୱା ବିଭୋ ତ୍ୱାଂ
ଧେୟେ ଧ୍ୟାନଂ ନିବେଶ୍ୟ କ୍ଷିତିଧରକୁହର ଗ୍ରାବପର୍ଯ୍ୟଙ୍କ ମୂଳେ ।
ଆତ୍ମାରାମଃ ଫଳାଶୀ ଗୁରୁବଚନରତସ୍ତ୍ୱତ୍ପ୍ରସାଦାସ୍ମରାରେ
ଦୁଃଖଂ ମୋକ୍ଷେ କଦାହଂ ସମକର ଚରଣେ ପୁଂସି ସେବା ସମୁତ୍ଥଂ । ୮୯ ।

ସେ ଶୁଭଙ୍କର
ମଙ୍ଗଳମୟ ପ୍ରଭୁ ଶିବ ଶଙ୍କର ।
ତାଙ୍କ ପଦେ ଏ ଦୀନ କରେ ମିନତି
ମିଳୁ ସୁଯୋଗ ବାରେ ହେବାକୁ ଯତି,
ଗଙ୍ଗା ଜଳରେ ସ୍ନାନ କୂଳରେ ବାସ -
କରିବା ପାଇଁ ଦିଅ ଶକ୍ତି ଅଶେଷ ।

ଆଣିବି ତୋଳି ଫୁଲ ତା' ତଟ ବନୁ
ମଣ୍ଡଣି କରିଦେବି ସେ ଦିବ୍ୟତନୁ,
ପୂଜିବି ଭକ୍ତିଭରେ ପ୍ରଭୁଙ୍କ ପଦ
ଲଭିବି ଅନ୍ତରେ ମୁଁ ଦିବ୍ୟ ଆନନ୍ଦ ।

ମିଳୁବା ଫଳାହାର ପାଷାଣ ଶଯ୍ୟା
ପବିତ୍ର ଗଙ୍ଗାମାତା ପରମ ପୂଜ୍ୟା,
ତା'କୂଳେ ଗୁରୁବାକ୍ୟ ଶୁଣିବି ବସି
'ପ୍ରଜା ସେବା' କଷଣ ଭୁଲିବି ହସି ।

ପାଣିଂ ପାତ୍ରୟତାଂ ନିସର୍ଗଶୁଚିନା ଭୈକ୍ଷେଣ ସନ୍ତୁଷ୍ୟତାଂ
ଯତ୍ର କ୍ୱାପି ନିଷୀଦତାଂ ବହୁତୃଣଂ ବିଶ୍ୱଂ ମୁହୁଃ ପଶ୍ୟତାଂ ।
ଅତ୍ୟାଗେଽପି ତନୋରଖଣ୍ଡ ପରମାନନ୍ଦା ବବୋଧସ୍ପୃଶା -
ମଧ୍ୱାକୋଽପି ଶିବ ପ୍ରସାଦ ସୁଲଭଃ ସଂପତ୍ସ୍ୟତେ ଯୋଗିନାଂ । ୯୦ ।

ମୁନିଋଷି ଗଣ କି ଭାଗ୍ୟବାନ
ସାଂସାରିକ ମୋହେ ନୁହନ୍ତି ମଗ୍ନ,
ହସ୍ତପାତ୍ର ତାଙ୍କ ଅଟେ ପବିତ୍ର
ଭିକ୍ଷାନ୍ନେ ହୃଦୟ ସଦା ସଂତୃପ୍ତ
ମନ ସନ୍ତୋଷ,
ଯହିଁ ତହିଁ ତାଙ୍କ ଆଶ୍ରୟବାସ ।

ତୃଣାସନେ କରି ଉପବେଶନ
ବ୍ରହ୍ମାନନ୍ଦ ରସେ ପ୍ଲାବିତ ମନ,
ଶିବଙ୍କ ଅଶେଷ କରୁଣା ଫଳେ
ଲଭନ୍ତି ପରମ ମୋକ୍ଷ ସକଳେ ।
କି ଭାଗ୍ୟବାନ
ମୁନି ମହାନ ।।

•

ଶିବାର୍ଚ୍ଚନ ସମାପ୍ତ

# ଅବଧୂତ ଚର୍ଯ୍ୟା

କୌପୀନଂ ଶତଖଣ୍ଡ ଜର୍ଜରତରଂ କନ୍ଥା ପୁନସ୍ତାଦୃଶୀ
ନୈଶ୍ଚିନ୍ତ୍ୟଂ ନିରପେକ୍ଷ ଭୈକ୍ଷମଶନଂ ନିଦ୍ରା ଶ୍ମଶାନେ ବନେ
ସ୍ୱାତନ୍ତ୍ର୍ୟେଣ ନିରଙ୍କୁଶଂ ବିହରଣଂ ସ୍ୱାନ୍ତଂ ପ୍ରଶାନ୍ତଂ ସଦା
ସ୍ଥୈର୍ଯ୍ୟଂ ଯୋଗମହୋତ୍ସବେଽପି ଚ ଯଦି ତ୍ରୈଲୋକ୍ୟ ରାଜ୍ୟେନ କିଂ । ୯୧ ।

ସଂସାର ବିରାଗୀ ସେ ଅବଧୂତ
ଜରାଜୀର୍ଣ୍ଣ କନ୍ଥା କୌପୀନ ଶତ,
ନିଶ୍ଚିନ୍ତ ଅଟଇ ମନ ତାଙ୍କର
ଭିକ୍ଷାନ୍ନେ ତୃପତ ଅଟେ ଉଦର ।

ଶ୍ମଶାନରେ ଅବା ଘୋର ଅରଣ୍ୟେ
ଶୟନ କରନ୍ତି ଆନନ୍ଦ ମନେ ।

ତୃଣାସନେ କରି ଉପବେଶନ
ବ୍ରହ୍ମାନନ୍ଦ ରସେ ପ୍ଲାବିତ ମନ,
ସ୍ୱଚ୍ଛନ୍ଦ ବିହାର ପ୍ରଶାନ୍ତ ଚିତ୍ତ
ଏଥିରୁ ନୁହନ୍ତି କେବେ ବିରତ
କି ଲାଭ ଅଛି,
ଯୋଗଧ୍ୟାନେ ସ୍ଥିର ନିଶ୍ଚଳେ ବସି !!

ବ୍ରହ୍ମାଣ୍ଡଂ ମଣ୍ଡଳୀ ମାତ୍ରଂ କିଂ ଲୋଭାୟ ମନସ୍ୱିନଃ
ଶଫରୀ ସ୍ଫୁରିତେ ନାବ୍ଧିଃକ୍ଷୁବ୍ଧୋ ନ ଖଲୁ ଜାୟତେ । ୯୨ ।

ଯତି ଜନ ମନ ନହୁଏ ପ୍ରସନ୍ନ
ହୁଏ ନାହିଁ ଲୋଭା ଗ୍ରସ୍ତ,
ତିନି ଭୁବନର ରାଜପଣ ଲାଭେ
ନୁହନ୍ତି କେବେ ଆସକ୍ତ ।
ପ୍ରଭାବ ପଡ଼େନି କିଛି,
ଶଫରୀ ଆଘାତେ ଅନନ୍ତ ସମୁଦ୍ର
ନ ତୋଳଇ କ୍ଷୁବ୍ଧ ବୀଚି ।

ମାତର୍ଲକ୍ଷ୍ମି ଭଜସ୍ୱ କିଂଚିଦପରଂ ମତ୍କାଙ୍କିଣୀ ମା ସ୍ମଭୂ -
ର୍ଭୋଗେଷୁ ସ୍ପୃହୟାଳବସ୍ତବ ବଶେ କା ନିଃସ୍ପୃହାଣାମସି ।
ସଦ୍ୟଃ ସ୍ୟୁତ ପଲାଶ ପତ୍ର ପୁଟିକା ପାତ୍ରେ ପବିତ୍ରୀକୃତୈ -
ଭିକ୍ଷା ବସ୍ତୁ ଭିରେବ ସମ୍ପ୍ରତି ବୟଂ ବୃତ୍ତିଂ ସମୀହାମହେ । ୯୩ ।

ପଲାଶ ପତ୍ରେ ଆଜି କରେ ଭୋଜନ
ମିଳଇ ଯହିଁ ମୋତେ ଯାହା ଭିକ୍ଷାନ୍ନ
ଥିଲ ପ୍ରସନ୍ନ ଦିନେ, ହେ ଲକ୍ଷ୍ମୀ ଦେବି ।
ଆଙ୍କିଥିଲି ମୁଁ ଦିନେ ସମୃଦ୍ଧି ଛବି
ଆଜି ଭିକାରି,
ଭାଗ୍ୟ ମୋ ଅରି ।

ତୁମେ ତ ଭାଗ୍ୟବାନ ବ୍ୟକ୍ତିର ଧେୟ
ଅଟେ ଅଭାଗା ଜନ ମୁଁ ନିରାଶ୍ରୟ,
ଚାହିଁବ କିଆଁ ମୋତେ କୃପା ଦୃଷ୍ଟିରେ
ମୋ'ପରି ସର୍ବହରା ବଞ୍ଚିତ ନରେ ।
ତୁମେ ଧନର ଦେବୀ,
ମୁଁ ତ ଶୂନ୍ୟ ସୁରଭି ।

ମହାଶଯ୍ୟା ପୃଥ୍ୱୀ ବିପୁଳ ମୁପଧାନଂ ଭୁଜଲତା
ବିତାନଂ ଚାକାଶଂ ବ୍ୟଜନ ମନୁକୂଳୋଽୟମନିଳଃ ।
ଶରଚ୍ଚନ୍ଦ୍ରୋ ଦୀପୋ ବିରତି ବନିତାସଙ୍ଗ ମୁଦିତଃ
ସୁଖୀ ଶାନ୍ତଃ ଶେତେ ମୁନିରତନୁଭୂତିର୍ନୃପ ଇବ ।୯୪ ।

ଯତୀ ସକଳ
ନୃପଙ୍କ ପରି ସେ'ତ କାଟନ୍ତି କାଳ ।
ଭୂମି ଅଟଇ ତାଙ୍କ ମହାନ ଶଯ୍ୟା
ଆନନ୍ଦେ ନିଦ୍ରାଗତେ ନଥାଏ ଲଜ୍ଜା,
ଉପାଧାନ ଅଟଇ ସ୍ୱ ବାହୁବଲ୍ଲୀ
ପବନ ବ୍ୟଜନକୁ ଦିଏ ସେ ଚାଳି ।

ଅନନ୍ତ ନଭ ଅଟେ ତା' ଚନ୍ଦ୍ରାତପ
ଚନ୍ଦ୍ର ତାରକା ଗଣ ତା'ର ପ୍ରଦୀପ,
ତା' କାନ୍ତା ଭକ୍ତି ପ୍ରୀତି ସଙ୍ଗାନୁଭୂତି
ଅମାପ ଶାନ୍ତି ସୁଖ ଦିଅଇ ନିତି ।

ଅନନ୍ତ ବିତ୍ତଶାଳୀ ନୃପତି ସମ
ସନ୍ତୋଷ ଲଭିଥାଏ ଯତୀ ଜୀବନ,
ନ ଥାଇ କିଛି ତା'ର ଥାଏ ତା' ସବୁ
ସନ୍ତୋଷ ଭରିଛନ୍ତି ମନରେ ପ୍ରଭୁ
ଏ'ତ ଯତୀ ଜୀବନ,
ଗଭୀର ସନ୍ତୋଷର ଭରା ଭବନ ।

**ଭିକ୍ଷାଶୀ ଜନମଧ୍ୟସଙ୍ଗରହିତଃ ସ୍ୱାୟତ୍ତଚେଷ୍ଟଃ ସଦା**
**ହାନାଦାନବିରକ୍ତ ମାର୍ଗନିରତଃ କଶ୍ଚିତ୍ତପସ୍ୱୀ ସ୍ଥିତଃ ।**
**ରଥ୍ୟାକୀର୍ଣ୍ଣ ବିଶୀର୍ଣ୍ଣ ଜୀର୍ଣ୍ଣବସନୈଃ ସଂପ୍ରାପ୍ତ କନ୍ଥାସନୋ**
**ନିର୍ମାନୋ ନିରହଂକୃତିଃ ଶମ ସୁଖା ଭୋଗୈକବଦ୍ଧ ସ୍ପୃହଂ ।୯୫ ।**

ତାପସ ଗଣ,
ଭିକ୍ଷୁକ ସମ
କାଟନ୍ତି ଦିନ,
ନିଃସଙ୍ଗ ଅଟଇ ତାଙ୍କ ଜୀବନ ।

ସେ, ନିର୍ଭରଶୀଳ ନୁହନ୍ତି କା'ର
ସ୍ୱାଧୀନ ଭାବରେ ସେ ଚେଷ୍ଟାଶୀଳ,
ନିର୍ବିକାର ମନ ସେ ନିର୍ବିକାର
ସମଭାବେ ଅଟେ ତା' ସମତୁଲ

ବୈରାଗ୍ୟ ବିଳାସୀ ନିର୍ଲିପ୍ତ ମନ
ପରିଧାନ ତାଙ୍କ ଜୀର୍ଣ୍ଣ ବସନ,
ମାନ ଅଭିମାନ ନଥାଏ ମନେ
ଥାଆନ୍ତି ସେ ସଦା ବିଭୁ ଧିଆନେ ।

ସେ ପଥଚାରୀ...
ବନବିହାରୀ,
ରାଗ ଅହଂକାର ନଥାଏ ମନେ
ବିହାର କରନ୍ତି ଆନନ୍ଦେ ବନେ ।
ସେ ସଦାଚାରୀ
ଭାବ ବିହାରୀ ସେ ବନ ବିହାରୀ ।

ଚଣ୍ଡାଳଃ କିମୟଂ ଦ୍ୱିଜାତିରଥବା ଶୂଦ୍ରୋଽଥ କିଂ ତାପସଃ
କିଂ ବା ତତ୍ତ୍ୱବିବେକ ପେଶଳମତି ର୍ଯୋଗୀଶ୍ୱରଃ କୋଽପି କିଂ ।
ଇତ୍ୟୁତ୍ପନ୍ନ ବିକଳ୍ପ ଜଳ୍ପ ମୁଖରୈରାଭାଷ୍ୟମାଣା ଜନୈ -
ର୍ନ କ୍ରୁଦ୍ଧାଃ ପଥି ନୈବ ତୁଷ୍ଟମନସୋଯାନ୍ତି ସ୍ୱୟଂ ଯୋଗିନଃ । ୯୬ ।

'ମୁନି ଋଷି ବୃନ୍ଦ
ସେ'ତ ଚିର ବନ୍ଦ୍ୟ ।'
କେ କହେ, 'ବ୍ରାହ୍ମଣ ଏ' କି
ଅଥବା ଚାଣ୍ଡାଳ
ଶୂଦ୍ର କିବା, ଭଦ୍ର କିବା
କି' ଜାତି ଇତର ।
କି'ବା ତତ୍ତ୍ୱ ବିଶାରଦ
ଯୋଗେଶ୍ୱର ଅବା
ବ୍ରହ୍ମଜ୍ଞାନୀ ମହାମୁନି
ଅପର ଅଥବା ।
ଏହା, ଖଳ ଜନର ଟିପ୍ପଣୀ
କରିଥାନ୍ତି ପରିହାସେ
ସେ ମୂଢ଼ ଅଜ୍ଞାନୀ ।

ଏ'ପରି ନିନ୍ଦିତ ବାଣୀ
ନକରି ଭ୍ରୂକ୍ଷେପ
ଚଳନ୍ତି ସନ୍ନ୍ୟାସୀଗଣ
ପରିହରି କୋପ,
ବ୍ରହ୍ମମାର୍ଗେ କରନ୍ତି ଗମନ
ବ୍ରହ୍ମ ପଦେ ଯୁକ୍ତ ତାଙ୍କ ମନ ।

ହିଂସାଶୂନ୍ୟମଯତ୍ନ ଲଭ୍ୟମଶନଂ ଧାତ୍ରା ମରୁତ୍କଳ୍ପିତଂ
ବ୍ୟାଳାନାଂ ପଶବ ସ୍ତୃଣାଙ୍କୁରଭୁଜସ୍ତୁଷ୍ଟାଃ ସ୍ଥଳୀଶାୟିନଃ ।
ସଂସାରାର୍ଣ୍ଣବ ଲଂଘନ କ୍ଷମଧିୟାଂ ବୃତ୍ତଃ କୃତା ସା ନୃଣାଂ
ତା ମନ୍ୱେଷୟତାଂ ପ୍ରୟାନ୍ତି ସତତଂ ସର୍ବେ ସମାପ୍ତିଂ ଗୁଣାଃ ।୯୭ ।

ଯା' ମିଳୁ ଅଶନ କରିବ ଭକ୍ଷଣ
ସନ୍ତୋଷ ଭରେ,
ହିଂସା ଭାବ ମନୁ କରି ପରିହାର
ଚଳିବ, ନରେ !
ତୃଣ ଭୂମିଶଯ୍ୟା ମିଳିଲେ କରିବ
ଶୟନ ତହିଁ,
ଚଳିବ ସର୍ବଦା, ସର୍ବ ଜୀବେଦୟା
କରୁଣା ବହି ।

ଏଥିପାଇଁ ଜ୍ଞାନ ଶକ୍ତି ଦେଇଛନ୍ତି
ତୁମକୁ ବିଭୁ,
ଭବାର୍ଣ୍ଣବୁ ପାର ହେବା ପାଇଁ ହେବେ
ସହାୟ ପ୍ରଭୁ
ହେ ବିଜ୍ଞଜନ !
ପାଳନ କର ହେ ଅନୁଶାସନ,
ସର୍ବ ଗୁଣେ ତୁମେ ହୋଇବ ପୂର୍ଣ୍ଣ ।

ଗଙ୍ଗାତୀରେ ହିମଗିରିଶିଳାବଦ୍ଧ ପଦ୍ମାସନସ୍ୟ
ବ୍ରହ୍ମଧ୍ୟାନା ଭ୍ୟାସନବିଧିନା ଯୋଗନିଦ୍ରାଂ ଗତସ୍ୟ ।
କିଂ ତୈର୍ଭାବ୍ୟଂ ମମ ସୁଦିବସୈର୍ଯତ୍ର ତେ ନିର୍ବିଶଙ୍କାଃ
କଣ୍ଡୂୟନ୍ତେ ଜରଠ ହରିଣାଃ ସ୍ୱାଙ୍ଗମଙ୍ଗେ ମଦୀୟେ ।୯୮ ।

ଆସିବକି ଜୀବନେ ସତେ ସେ ଦିନ
ଗଙ୍ଗା ପୁଳିନେ ତପେ ହେବି ମଗନ,
ହିମ ପର୍ବତ ଶିଳାଶଯ୍ୟାରେ ବସି
ପଦ୍ମାସନରେ, ଧ୍ୟାନେ ବ୍ରହ୍ମଙ୍କୁ ତୋଷି
ସେ ପଦ ବନ୍ଦେ,
ଲଭିବି ଯୋଗନିଦ୍ରା ମୁଁ ବ୍ରହ୍ମାନନ୍ଦେ ।

ହୋଇଯିବି ମୁଁ ଧ୍ୟାନେ ସ୍ଥିର ନିଶ୍ଚଳ
ଜୀବନ ସ୍ରୋତ ମମ ହେବ ଅଚଳ,
ଆସିବେ ବୃଦ୍ଧ ମୃଗ ନିର୍ଭୟ ମନେ
ଘଷିବେ ନିଜ ଅଙ୍ଗ, ମୋ ଅଙ୍ଗେ, ଟାଣେ -
ଭାବି ପାଷାଣ ମୂର୍ତ୍ତି,
ଲଭିବି ସେତେବେଳେ ଅଶେଷ ତୃପ୍ତି ।

ପରମ ଇଚ୍ଛା ମମ କର ହେ ପୂର୍ଣ୍ଣ
ତୁମ ପଦରେ ପ୍ରଭୁ ମିନତି ମମ,
ପାଏ ମୁଁ ଯୋଗଧ୍ୟାନେ ପରମଗତି
ଗ୍ରହଣ କର ପ୍ରଭୁ ! ଦୀନ କାକୁତି ।।

ପାଣିଃ ପାତ୍ରଂ ପବିତ୍ରଂ ଭ୍ରମଣ ପରିଗତଂ ଭୈକ୍ଷମକ୍ଷଯ୍ୟମନ୍ନଂ
ବିସ୍ତୀର୍ଣ୍ଣଂ ବସ୍ତ୍ରମାଶାଦଶକମଚପଲଂ ତଳ୍ପମସ୍ୱଳ୍ପ ମୁର୍ବୀ ।
ଯେଷାଂ ନିଃସଙ୍ଗତାଙ୍ଗୀକରଣ ପରିଣତ ସ୍ୱାନ୍ତ ସନ୍ତୋଷିଣସ୍ତେ
ଧନ୍ୟାଃ ସଂନ୍ୟସ୍ତଦୈନ୍ୟ ବ୍ୟତିକର ନିକରାଃ କର୍ମ ନିର୍ମୂଳୟନ୍ତି ।୯୯ ।

ସେ'ତ ଅବଧୂତ ସନ୍ନ୍ୟାସୀ
ସେ ଶୂନ୍ୟବାସୀ ।
ପବିତ୍ର ପାଣି ପାଦ ତାଙ୍କ ଚଞ୍ଚଳ
ସଂଚରଣଶୀଳ ତା' ସଞ୍ଚର ଶୀଳ,
ଭିକ୍ଷା ଅନ୍ନ ସେ ଲଭି,
ତୃପ୍ତ ହୁଅନ୍ତି ସେବି ।

ଯୋଗୀ ସେ ଦିଗାମ୍ବର
ଦଶଦିଶ ଅମ୍ବର,
ଭୂମି ଶଯ୍ୟାରେ ତାଙ୍କ ଶୟନ ନିତି,
ଜୀବନ ଯାଏ ମହା ସନ୍ତୋଷେ ବିତି
ନିଃସଙ୍ଗତା ହିଁ ଶ୍ରେୟ
ନିର୍ଜନତା ଅଟଇ ତାଙ୍କର ଧେୟ ।

ଦୈନ୍ୟ ସେ ପରିହରି
ମନେ ବ୍ରହ୍ମ ସୁମରି,
ଦୁର୍ଗୁଣ ସବୁ ମନୁ କରନ୍ତି ଦୂର,
ହୁଅନ୍ତି କର୍ମ ପଥେ ସେ ଅଗ୍ରସର ।
ବିଭୁ ପଦକୁ ଧାୟୀ
ସଦା ସେ ବ୍ରହ୍ମାଶ୍ରୟୀ ।

ମାତର୍ମେଦିନି ତାତ ମାରତ ସଖେ ତେଜଃ ସୁବନ୍ଧୋ ଜଳ
ଭ୍ରାତର୍ବେଦମ ନିବଦ୍ଧ ଏବ ଭବତା ମନ୍ତ୍ୟଃ ପ୍ରାଣାମାଞ୍ଜଳିଃ ।
ଯୁଷ୍ମସଙ୍ଗବଶୋପଜାତ ସୁକୃତ ସ୍ଫାର ସ୍ଫୁର ନ୍ନିର୍ମଳଃ
ଜ୍ଞାନା ପାସ୍ତ ସମସ୍ତ ମୋହ ମହିମା ଲୀୟେ ପରଂବ୍ରହ୍ମଣି ।୧୦୦ ।

ଜନନୀ ଅଟେ ମୋର ବସୁଧା ମାତ
ମରୁତ ଦେବ ମୋର ଅଟନ୍ତି ତାତ,
ଅଗ୍ନି ଦେବତା ସଦା ମୋ ପ୍ରିୟ ସଖା
ଆକାଶ ଭ୍ରାତା ମୋର, ପାଇଛି ଦୀକ୍ଷା ।

ପ୍ରଣାମ ଜଣାଉଛି ପଦରେ ତୁମ
ପ୍ରେରଣା ଦେଇଅଛ ସୁବନ୍ଧୁ ସମ,
ଲଭିଛି ଦିବ୍ୟଜ୍ଞାନ ତୁମରି ଠାରୁ
ହୋଇଛି ମୋହଭଙ୍ଗ, ତୁମ କୃପାରୁ ।

ପରମ ପଦେ ଲିପ୍ତ ହୋଇଛି ମନ
ପରମ ବ୍ରହ୍ମେ ଚାହେଁ ହେବାକୁ ଲୀନ ।
ପ୍ରଭୁ ! ହେବାକୁ ଲୀନ । ।

●●

- ସମାପ୍ତ -

